# ଅଶ୍ରୁତ ସ୍ୱର

**ଶ୍ରୀ ଚନ୍ଦ୍ରଶେଖର ରଥ**

ଉପାଧ୍ୟକ୍ଷ, ବି. ଜେ. ବି. କଲେଜ

ଭୁବନେଶ୍ୱର

ଗ୍ରନ୍ଥମନ୍ଦିର

Digitized by srujanika@gmail.com

# ସୂଚୀ



□□□

Digitized by srujanika@gmail.com

# ପ୍ରଶ୍ନ

ପେଶାଦାର ବହୁରୂପୀ ତା' ପେଟେରା ଭିତରେ ହରରଙ୍ଗି କିଛି ପୋଷାକ ଓ ତା' ସାଙ୍ଗକୁ ରଙ୍ଗ ନେଇ ହଳଦିଆ ମଇଳମ କିଛି ରଖି ବୁଲୁଥାଏ । ବେଳ ପଡ଼ିଲେ ସେଇ ରଙ୍ଗ ଏବଂ ପୋଷାକ କେତେଖଣ୍ଡର ହର୍ ଗୁଣ୍ ଫେଣ୍ଟ୍ ମିଶା ଭିତରେ ସେ ନାନା ବେଶ ଓ ରୂପରେ ଆସି ଉଭା ହୁଏ । ସେମିତି ଦେଖିବାବାଲା କିନ୍ତୁ ଏ ଖୋଳ ଭିତରେ ସେଇ ଗୋଟିଏ ମାତ୍ର ଦୁଃସ୍ଥ ଅଭିନେତାକୁ ହିଁ ଦେଖେ ଏବଂ ତାକୁ ଦୟା କରେ । ସେଇଭଳି ସେ ଦୟା କରେ ମୋଟା ଚଷମା ପରିହିତ ସର୍ବ-ଜାଣ ଜ୍ଞାନସାଗରଙ୍କୁ, ଯାହାଙ୍କ ମୁଷ୍ଟିରେ ସଂସାରର ସର୍ବ ପ୍ରଶ୍ନର ଉତ୍ତର ତାଳପତ୍ରର ନଥି-ଖାତା ରୂପେ ଥାକ ମରାହୋଇ ଥୁଆ ହୋଇଥାଏ । ତାଙ୍କ ମନଟି ଗୋଟିଏ ଗୋଦାମ ଘର, ବୁଦ୍ଧି ଗୋଟିଏ ଗୁହରକୋଣିଆ ଆଲମାରୀ । ତା' ଭିତରେ ସେ ଅନେକ ପୁରୁଣା ମାଲ୍ ହରଣଚାଲ କରି କୋଲପ ପକାଇଥାନ୍ତି । ଦୁଃସ୍ଥ ଗ୍ରାହକ ସକାଳରେ ତାଙ୍କ ଦୁଆରେ ଆସି ମୁଣ୍ଡ ପିଟିଲେ ସେ ଚଷମାକାଚ ଖଞ୍ଜିଲା ପରେ ତା' ପ୍ରଶ୍ନକୁ କେତୋଟି ଯାଦୁ ଶବ୍ଦରେ ଖାପିଯାନ୍ତି । ଯେଉଁଠାରେ ସେ 'ହଇ, ହଇ' କହି କୁହାଟି ଦେଲେ, ସେଇଠି ସର୍ବଜାଣଙ୍କ ଟିକିଏ ସବ୍‌ଜାନ୍ତା ମୃଦୁହସ, କିଛି ଜ୍ଞାନମୁଦ୍ରା ଓ ସମାଧି । ସେ ନିଜେ ପ୍ରଶ୍ନ କରିପାରନ୍ତି ନାହିଁ । ସେଇଟା କୁଆଡ଼େ ତାଙ୍କପାଇଁ ଘୋର ଅପମାନସୂଚକ । ସପ୍ତର୍ଷିମଣ୍ଡଳ ପରି ମହାକାଶରୁ ଭୂଗର୍ଭ ପର୍ଯ୍ୟନ୍ତ ଲମ୍ବିମାନ ଥୋଲ ଥୋଲ ପ୍ରଶ୍ନର ରୂପ ସେ ଦେଖିନାହାନ୍ତି । ସେଇ ନୀରବ, ନିଷ୍ପନ୍ଦ, ଶୀତଳ ବକ୍ରରେଖାଗୁଡ଼ିକୁ ସମ୍ଭ୍ରମରେ ନମସ୍କାର ଜଣାଇ ନାହାନ୍ତି । ସେହି ଚିରନ୍ତନ ଆବାହନର ସଙ୍କେତ, ସେଇ ସନାତନ ଯାଚନାର ଚିହ୍ନକୁ ସେ ଦେଖି ସୁଦ୍ଧା ଦେଖି ନାହାନ୍ତି । ଜାଣି ନାହାନ୍ତି ଯେ ଉତ୍ତରର ଅଜସ୍ର ଆଜ୍ୟ ସମିଧ ଆହୁତି କଲେ ମଧ୍ୟ ପ୍ରଶ୍ନର ଶିଖା ସନ୍ଦୀପିତ ହୋଇ ରହିଥାଏ ।

ସମୁଦ୍ରରେ ଅନିବାର୍ଯ୍ୟ ଲହରୀ ଉଠିଲା ପରି ମନର ପରିଧି ଭିତରେ ଅସଂଖ୍ୟ ପ୍ରଶ୍ନର ଢେଉ ବେଳାଭୂମିକୁ ଆଘାତ କରନ୍ତି । ଗୁଡ଼ାଏ ଅଜ୍ଞାତ ରହସ୍ୟର ଅନ୍ଧ କନ୍ଦି ଭିତରକୁ ମାଡ଼ିଯାଏ ଲୁଣିପାଣିର ଜୁଆର । ନିଜକୁ ନିଜେ ଗ୍ରାସ କଲା ପରି

Digitized by srujanika@gmail.com

ପୁଣି ଫେରି ମଧ୍ୟ ଆସେ । ଏଇଭଳି ନିଜକୁ ନିଜେ ମନ୍ଥନ କରି ସେ ଲହରୀଗୁଡ଼ିକ କ'ଣ ଖୋଜନ୍ତି ବା କ'ଣ ପ୍ରକାଶ କରିବାକୁ ଚାହାନ୍ତି, ବୁଝିବା କଠିନ । ଶ୍ୱାସ ପ୍ରଶ୍ୱାସର ପ୍ରବାହ ଗୋଟିଏ ଅବିରାମ ଛନ୍ଦରେ ଯେମିତି ସ୍ୱାଭାବିକ ଧର୍ମ ରକ୍ଷା କରି ଚାଲିଥାନ୍ତି, ପ୍ରାୟ ସେପରି । ପ୍ରଶ୍ନ ଏଇ ପର୍ଯ୍ୟାୟର ଏକ ପ୍ରକାର ତରଳ ଅସ୍ଥିରତା । ଶରୀର ପ୍ରାଣବନ୍ତ ଥିବା ପର୍ଯ୍ୟନ୍ତ ଶ୍ୱାସର ଆନ୍ଦୋଳନ ଚାଲିଥାଏ ଏବଂ ମନ ସକ୍ରିୟ ଥିବା ପର୍ଯ୍ୟନ୍ତ ପ୍ରଶ୍ନର ଲହରୀ ଉଠୁଥାଏ । ଏ ତରଙ୍ଗ ଲିଭିଗଲେ ମନର ସୂର୍ଯ୍ୟ ବୁଡ଼ିଯାଏ ଏବଂ ଜମାଟ ବାନ୍ଧିଯାଏ ସମଗ୍ର ତରଳ ଚେତନା । ସାଧାରଣ ଜୀବନରେ 'କ'ଣ କରିବା' ଗୋଟିଏ ପଞ୍ଚାକ୍ଷର ମନ୍ତ୍ର, ଏକ ଶାଶ୍ୱତ ପ୍ରଶ୍ନ । ଦ୍ୱିପହର ଖରାରେ ନୂଆ ପତ୍ର ପକାଉଥିବା କଅଁଳ ଲଇକୁ କାନେଇଲେ ସେଇଠି ଅହରହ ଶୁଭୁଥାଏ 'କ'ଣ କରିବା' । ଚାରିଆଡ଼େ, ନଈ, ବଣ, ପାହାଡ଼, ଡାଳ ଜଳଜଳ ଦିଶୁଥିଲେ ସୁଦ୍ଧା ଚେତନା ଝୁଣ୍ଟି ପଡ଼େ ଗୋଟାଏ ଅଦୃଶ୍ୟ କାଚବାଡ଼ ଉପରେ । ଧାପେ ଆଗକୁ କ'ଣ ଅଛି, ଭବିଷ୍ୟତର ଅନ୍ତରାଳରେ କ'ଣ ଲୁଚିଛି ଜାଣିପାରେ ନାହିଁ ବୋଲି ପ୍ରତିମୁହୂର୍ତ୍ତର ସଂଗ୍ରାମରେ ମେ ଜପୁଥାଏ 'କ'ଣ କରିବା' । ଯେଉଁମାନେ ଏ ପ୍ରଶ୍ନର ଧକ୍କା ସମ୍ଭାଳି ପାରନ୍ତି ନାହିଁ, ସେମାନେ ପହଞ୍ଚନ୍ତି ସବଜାଣଙ୍କ ପାଖରେ । ହନୁମାନ ପ୍ରଶ୍ନ ଉପରେ ଖଡ଼ି ଗୋଟାଳିଟି ଥୋଇ ଦିଅନ୍ତି ଏବଂ କୁଣ୍ଡ ପାଇଲି ଭଳି, ଭବିଷ୍ୟତର ଅନନ୍ତ ସମ୍ଭାବନା ଭିତରୁ କିଛି ଠିକେ ଠିକେ ଶୁଣିଲା ପରେ ଡୁବ କରନ୍ତି ଅଜଣା ଭିତରକୁ ପଶିବାପାଇଁ । ଆଉ ଦଳେ ବ୍ୟବସାୟୀ ଯୋଜନା କରି ତାହାର ସମ୍ଭାବ୍ୟ ଫଳରୁ ସଞ୍ଜୀବନୀ ଶୋଷନ୍ତି ଓ ସେଥିରେ ମସ୍‌ଗୁଲ୍ ଥାଆନ୍ତି । ତାଙ୍କ ପାଇଁ 'କ'ଣ କରିବା' ପ୍ରଶ୍ନ ସେତେ ତୀବ୍ର ନୁହେଁ; କିନ୍ତୁ ଯେତେବେଳେ ବେଳାଭୂମିର ବାଲିଘର ଉପରେ ଅତର୍କିତ ସମୁଦ୍ର ଲହଡ଼ି ମାଡ଼ିଯାଏ ଏବଂ ବାରମ୍ବାର ମାଡ଼ିଯାଏ, ଯୋଜନାଖୋର ବ୍ୟବସାୟୀ ମଧ୍ୟ ଗାଲରେ ହାତ ଦେଇ ତା'ର ଝୁଲି ପଡ଼ିଥିବା ନିଶ ଓ ଆଖିପତାକୁ ବଡ଼ ବଡ଼ ହୁଏ, 'କ'ଣ କରିବା' । ଏହାର ଉତ୍ତର ସେ ପାଏ ନାହିଁ, କାରଣ ଉତ୍ତର ନାହିଁ । ଏହା ତ ପ୍ରଶ୍ନ ନୁହେଁ, ଜୀବନର ଅସହାୟତା ଉପରେ ଏଇଟା ଗୋଟାଏ ମନ୍ତବ୍ୟ ।

ଶିଶୁ କଥାକହିବା ଆରମ୍ଭ କରୁ କରୁ ପ୍ରଶ୍ନ ପଚାରେ । ତା ଆଖିରେ ସବୁ ନୂଆ, ସବୁ ଅଚିହ୍ନା । ତା' ଭିତରେ ଅଦମ୍ୟ ଇଚ୍ଛା ହୁଏ ଚିହ୍ନିବାକୁ, ଜାଣିବାକୁ । ସେଇ ଇଚ୍ଛା ପ୍ରଶ୍ନରୂପରେ ହିଁ ପ୍ରକାଶ ପାଏ । ଏଇଟା କ'ଣ ?—ଫଳ ।

Digitized by srujanika@gmail.com

ଫୁଲ୍ କ'ଣ ?—ଫୁଲ୍ ଗଛରେ ଫୁଟେ । କାହିଁକି ଫୁଟେ ? ବୟସ୍କ ଉତ୍ତରଦାତା ଟିକିଏ ଥମି ଯାଆନ୍ତି । ହୁଏତ କହନ୍ତି, 'ଚୁପ୍, ବଗୁଲିଆ !' ବା କହନ୍ତି, 'ଚାଲ୍ ଏଥର ଘରକୁ ଯିବା !' କିମ୍ବା କହନ୍ତି, 'ବଡ଼ ହେଲେ ଜାଣିବୁ !' ଏଇଭଳି ଅଜସ୍ର ସଂସାରକୁ ସେ ତା' କେନ୍ଦ୍ରରୁ ଦେଖି ଅସଂଖ୍ୟ ପ୍ରଶ୍ନ କରେ । ଉତ୍ତରରେ କେବଳ ଶବ୍ଦରୂପ ଧାତୁରୂପ କିଛି ପାଏ ଏବଂ ବସ୍ତୁ ସାଙ୍ଗକୁ ଗୁଡ଼ିଏ ନାଆଁ କେବଳ ଯୋଡ଼ି ଚାଲେ । ସେ ହୁଏତ ନିଜ ଅଜାଣତରେ ଉତ୍ତମ ରହସ୍ୟଟି ଖୋଜୁଥାଏ; କିନ୍ତୁ ତାକୁ ପିଆଇ ଦିଆହୁଏ କିଛି ଅଭିଧାନ, କିଛି ମୀମାଂସା । ସେ କାବୁ ହୋଇ ମନକୁ ମୁହଁପୋଡ଼ି ଭୁଲାଏ କିମ୍ବା ସେଇ ଉତ୍ତରଗୁଡ଼ିକୁ ଘୋଷି ମୁଖସ୍ଥ କରେ । ତଥାପି ପ୍ରଶ୍ନର ଜୁଆର ମାଡ଼ି ଆସେ ତା'ର ସ୍ୱାଭାବିକ ସ୍ରୋତରେ । ପ୍ରତିମୁହୂର୍ତ୍ତରେ ଗୋଟିଏ ଲେଖାଁ ପ୍ରଶ୍ନ ଜୀବନର ତନ୍ତ୍ରୀ ସନ୍ଧାରେ ଓହଳି ରହନ୍ତି ।—'ଦାନ୍ତ କାଠି ଅଛି ?'—'କ'ଣ ଜଳଖିଆ ହେବ ?'—'ଯୋତା ସଫା ହେଲା କି ?'—'ଦରମା କେତେ ?'—'ମଶାରି ଧୋବା ଦେଲଣି କି ?'—ଇତ୍ୟାଦି ! ଏପରି ପ୍ରଶ୍ନବାଚୀକାର ସଂଖ୍ୟା ନାହିଁ, ବେଳ ମଧ୍ୟ ନାହିଁ, ସେମାନଙ୍କ ପାଇଁ 'ହଁ', 'ନାହିଁ'ର ଗୋଟାଏ ଦର୍ପଣୀ ଉତ୍ତର ଦେଖେଇବାକୁ । ହୁ ହୁ କେବଳ ଜୀବନ ଗଡ଼ିଚାଲେ କି ଏଭଳି ପ୍ରଶ୍ନପ୍ରବାହ ମାଡ଼ିଚାଲେ, ଆମ ସର୍ବଜାଣ କ'ଣ କହିପାରିବେ ?

ଚାରିକୋଣିଆ ଝରକା ଭିତର ଦେଇ ଜହ୍ନରାତିରେ ଘୁମନ୍ତ ବଣ, ନଈ ଓ ଧାଡ଼ି ଧାଡ଼ି ବାଲିମାଳକୁ ଅନାଇଁ ରହିଥିଲାବେଳେ ଦୃଷ୍ଟିର ସୁଅରେ ଦର୍ଶକ ନିଜେ ପହଁରି ଆସିଥାଏ ସେଇ ପାଣ୍ଡୁର ଏବଂ ଶୀତଳ ପରିବେଶ ଭିତରକୁ । ପାହୁଣ୍ଡେ ପଛକୁ ଘୁଞ୍ଚିଗଲେ; କିନ୍ତୁ ତାକୁ ହଠାତ୍ ଦିଶେ ଯେ ଅନନ୍ତ ଆକାଶସମେତ ସେ ସମସ୍ତ ବିସ୍ତୀର୍ଣ୍ଣ ଦୃଶ୍ୟ ଗୋଟିଏ ଚିତ୍ରପଟ ଭଳି ଚାରିକୋଣିଆ ଝରକାର ଚଉକାଠଭିତରେ ବନ୍ଧା ପଡ଼ିଛନ୍ତି । ସେଇଭଳି ଦୂରବୀକ୍ଷଣ ଯନ୍ତ୍ରର ସମାନ୍ତରାଳ ଗାରଗୁଡ଼ିକର ଖୋପଭିତରେ ଶୂନ୍ୟଚାରୀ ନକ୍ଷତ୍ର ଧରିଦିଏ, ନିରାକାର ଆକାଶ ଗୋଟିଏ ଗିରିକଣ୍ଠା ଚକାଥାଳିଆ ପରି ଦିଶେ । ସଚେତନ ମନର ଗବାକ୍ଷ ଗୋଟିଏ ପ୍ରଶ୍ନବାଚୀ ଚିହ୍ନ । ତା' ଭିତର ଦେଇ ଯାହାକୁ ଚାହିଁଲେ ତା' ଉପରେ ସେଇ ଚିହ୍ନଟି ମଡ଼େଇ ହୋଇଯାଏ । ସେଇ ବଙ୍କା ଲିହ୍ନଡ଼ିଟି ଲିଭି ହୋଇଗଲେ ମନ ଅସ୍ଥିର ହୋଇଉଠେ । ସରଳ ଗାଛଟିଏ ପରି ଦୂବଘାସକୁ ସେ ଅନେଇ ପାରେ ନାହିଁ । ତା'ର ଶିରା ଗଣେ, ତା'ର ଅଗମୂଳ ପରୀକ୍ଷା କରେ । ତା'ର ବଂଶପରମ୍ପରା ନିର୍ଣ୍ଣୟ କରେ । ତା' ଉପରେ ଚିହ୍ନଟପାଇଁ ନାଁଟାଏ କାଗଜ ଚଟାରେ ଲଗାଇ

Digitized by srujanika@gmail.com

ହଏ । ତା'ପାଇଁ ଅଣୁବୀକ୍ଷଣ ଯନ୍ତ୍ର ଖଞ୍ଜେ । ଯାହା ଦେଖେ, ତାକୁ ଥାକ ଥାକ ଗ୍ରନ୍ଥ ଲେଖି ଥୁଏ । ତା' ଦାଢ଼ି ପାଚିଯାଏ । ଆଖି ଗୃହଅନ୍ଧେର ବୁଢ଼ିଆଣୀ ଜାଲ ମାଡ଼ିଯାଏ । ଅଣୁରୁ ପରମାଣୁକୁ ଯାଇ ସେ କ୍ଳାନ୍ତ ହୋଇପଡ଼େ । ଦୂବଘାସ ଉପରୁ କିନ୍ତୁ ସେଇ ପ୍ରଶ୍ନବାଚକ ଚିହ୍ନଟି ପୂର୍ବବତ୍ ଲଙ୍ଗ ଟେକି ତାକୁ ଅନେଇଥାଏ । ସେଥିରୁ ମୋଟେ ମୁକ୍ତି ମିଳେନାହିଁ; କାରଣ ସଚେତନ ମନର ତାହା ହିଁ ଗବାକ୍ଷ । ତା'ରି ଭିତରେ ଆର୍କିମିଡ଼ିସ, ଗାଲିଲିଓ ଏବଂ ଆଇନ୍‌ଷ୍ଟାଇନମାନେ ଅନାନ୍ତି । ଦୂବଘାସର ସବୁଠାରୁ ସୂକ୍ଷ୍ମ ଶିଖରେ ହସୁଥିବା ସୂର୍ଯ୍ୟ ଗ୍ରହପଟେ ହୁଏତ ବାରଟା ଚନ୍ଦ୍ର ବୁଲିବାର ସେମାନେ ଦେଖନ୍ତି । ପୁରୁଷ ପୁରୁଷଧରି ସେଇ ଝରକା ପାଖେ ମନୀଷ ମନର ଅଜସ୍ର ଲହୁ ଲୁହ ବଳିଦାନ ହୋଇଯାଏ । ଅନେକ ଗ୍ରନ୍ଥାଗାର ଭରିଯାଏ ନୂଆ ନୂଆ ତଥ୍ୟରେ । ସମୁଦ୍ର ଲହରୀ ପରି ନିଜକୁ ନିଜେ ମନ୍ଥନ କରେ, ନିଜକୁ ନିଜେ ଦୋହନ କରେ ମନୀଷର ପ୍ରଶ୍ନବାଚୀ ମନ ଏବଂ ଏ ସମସ୍ତ ଐଶ୍ୱର୍ଯ୍ୟ ସ୍ରଜେ । ତାଅନ୍ତା ହଜାରେ ବର୍ଷପରେ ସେ ଗ୍ରନ୍ଥ ସବୁ ହୁଏତ ସେଇ ଦରରେ ବନ୍ଦୀ ହୋଇଯିବ, ବା ସେଇ ଦୂବଘାସମୂଳେ ଖତରୂପେ ଅଜଡ଼ା ହୋଇଯିବ; କିନ୍ତୁ ଏ ଝରକାପାଖେ ଠିଆ ହୋଇଥିବା ପର୍ଯ୍ୟନ୍ତ ପ୍ରଶ୍ନବାଚକ ଚିହ୍ନଟି କେବେ ଅପସାରିତ ହେବନାହିଁ; ସେଇ ଚିହ୍ନ ହିଁ ଆମ ମନର ଏକମାତ୍ର ଝରକା । ବିଭିନ୍ନ ବସ୍ତୁ ଉପରେ ଆମେ ତାହାର ହିଁ ଆକାର ଅଯୂତନ ଦେଖୁ । ଗାଈର କିନ୍ତୁ ସେପରି ଝରକା ନାହିଁ । ସେ ହୁଏତ ଜାଣେନା ଦୂବର ରଙ୍ଗ ସବୁଜ । ତା' ପାଇଁ ତା'ର ବାସ୍ନା ଅଛି, ଯାହା କ ଜଠର ଭିତରେ ଅଗ୍ନି ଜାଳିଦିଏ । ତା'ର ସ୍ୱାଦ ଅଛି, ଯାହା ତା'ର ବେଢଗା ବ୍ଲେଗା ଗବ୍ୟ ଆଖି ଯୋଡ଼ିକୁ ବୁଜିଆଣେ । ଏଣୁ ପ୍ରଶ୍ନ ହୁଏତ ମନୀଷ ମନର ହିଁ ଏକ ବିଚିତ୍ର୍ୟ, ଏକପ୍ରକାର ବିଶିଷ୍ଟ ବକ୍ରତା । ପ୍ରଶ୍ନ ପଚାରିବାର ଏଇ ମାନସିକ ଶକ୍ତିଟିର ଦୁର୍ଲ୍ଲଭ ଅଧିକାର କିମ୍ବା ଏକ ଅନିବାର୍ଯ୍ୟ ପ୍ରବୃତ୍ତି ।

ତା' ନେହେଲେ ତ ପାଣିଭିତରେ ଅଧା ବୁଡ଼ିଥିବା କାଠଦଣ୍ଡ ପରି ସମଗ୍ର ସଂସାର ସରଳ । କେବଳ ମନଭିତରେ ଅଙ୍କ ଚାରି ହୋଇଗଲେବେଳେ ସେଇଟା ବଙ୍କା ଦିଶିଯାଏ; କିନ୍ତୁ ଘଟଣାଟା ବୋଧହୁଏ ଠିକ୍ ତାହା ନୁହେଁ । ପ୍ରତ୍ୟେକ ବସ୍ତୁଭିତରେ ଏଭଳି କିଛି ଅଛି, ଯାହା ମନର ରମ ବଳତାରେ ନଆଁ ଲଗିଦିଏ । କିଛି ସମସ୍ତ ନଆଁ ମାଡ଼ିଗଲେ ହାବେଳ ଗର୍ଜେ । ଧୂ' ଧୂ' ହୋଇ ତେଜୀକ ସେ ଶୂନ୍ୟକୁ ଚହଟିଯାଏ, ପୂରୁଣା ଭୂଇଁ ଛାଡ଼ ନୂଆ ଦିଗ୍‌ବଳୟକୁ ଅନାଏଁ । ତଥାପି ଦିଗ୍‌ବଳୟ

Digitized by srujanika@gmail.com

ମଣିଷମାନେ ନାହାଁନ୍ତି । ବ୍ରହ୍ମାଣ୍ଡ କୋଟି କୋଟି ରୂପ, ରଙ୍ଗ ଭିତରୁ ଏଇଭଳି ଗୋଟାଏ କ'ଣ ତାକୁ ଚକିତ କରେ, ତାକୁ ପ୍ରରୋଚିତ କରେ । ସାଗର ଗର୍ଭ ଭିତରେ କୌଣସି ଗୋଟିଏ ଅଜ୍ଞାତ କେନ୍ଦ୍ରରେ ଅଦ୍ଭୁତ କମ୍ପନ ଲକ୍ଷ ଲକ୍ଷ ଢେଉ ଅନବରତ ସୃଷ୍ଟି କଲାପରି ମଣିଷଟି ନିମିତ୍ତରୂପେ କେବଳ ବ୍ୟବହୃତ ହୋଇଯାଏ । —ସୃଷ୍ଟିର ପ୍ରତିଟି ରେଣୁ ସୃଷ୍ଟିପରି ପୁରୁଣା । ଏଇ ଧୂଳିକଣାଟି ହୁଏତ କାଳର କୌଣସି ସମ୍ଭାବନା ଭିତରେ ସୁଦୂର ନକ୍ଷତ୍ରିକା ମଣ୍ଡଳରେ ବହେ ଭିନ୍ନ ରୂପରେ ଥିଲା । ଏ ସମସ୍ତ ରେଣୁ ମଧ୍ୟ ନ ଥିଲେ ନୁହେଁ—ଅବଶ୍ୟ ଥିଲେ । ଏଥିରୁ କେହି ଅର୍ବାଚୀନ ନୁହନ୍ତି; ସମସ୍ତେ ଶାଶ୍ୱତ, ସମସ୍ତେ ପୁରୁଣ, ସମସ୍ତଙ୍କର ଉପାଦାନ ସେଇ ଅକଳନୀୟ ଅନନ୍ତ । ଗଛର ପତ୍ରରେ ଶରୀର ଗ୍ରନ୍ଥି ଭିତରେ ମୌଳିକ ଉତ୍ତମ ରହସ୍ୟଟି ଉଙ୍କି ମାରୁଥାଏ । ଏଇ ମାନସିକ ଜୀବଟିକୁ ଉପାୟରୂପେ ବ୍ୟବହାର କରି ନିଜେ ପ୍ରକଟ ହେବାକୁ ଚାହେଁ । ସେ ପ୍ରଲୁବ୍ଧ କରେ, ଉଚ୍ଚାଟ ସୃଷ୍ଟି କରେ, ଅସ୍ଥିର କରେ । ତାକୁ ସେ ପର୍ବନ୍ଧ ଯୋଜନର ଗମ୍ଭୀରତା ଭିତରୁ ଉଠାଇ ଆଣିବାକୁ ମଣିଷ କ୍ଷୁଧିତ ହୋଇଉଠେ । ତା' କ୍ଷୁଧାର ରୂପ ସେଇ ପ୍ରଶ୍ନ, ଅତୃପ୍ତି ଶ୍ରାବଣର କ୍ଷୁଧିତ ଏବଂ ବନ୍ଧ, ଦେଖା ଖର୍ପର ପରି ଅପୂରଣୀୟ, ହବନ କୁଣ୍ଡପରି ଜ୍ୱଳନ୍ତ !

ଏଭଳି ଅଣାୟତ୍ତରେ ପ୍ରଶ୍ନ କରୁ କରୁ ସମୁଦ୍ର ଫୁଲି ଉଠେ । ଶ୍ରେଷ୍ଠ ଶ୍ରେଷ୍ଠ ଢେଉ ପରିବର୍ତ୍ତେ ମାଡ଼ିଆସେ ଜୁଆରିଆ ତରଙ୍ଗ । ଏ ଗମ୍ଭୀର ପର୍ଯ୍ୟାୟରେ ପ୍ରଶ୍ନର ରୂପ ମଧ୍ୟ ଅତି ବିଶାଳ ଏବଂ ଭବ୍ୟ ସୁନ୍ଦର । କୌଣସି ଗୋଟିଏ ବ୍ୟକ୍ତି ବା ବସ୍ତୁ ଉପରେ ଯେଉଁ ଶ୍ରେଷ୍ଠ ପ୍ରଶ୍ନ—ରେଣୁଗୁଡ଼ିଏ କୁଡ଼େଇ ହୋଇ ପଡ଼ିଥିଲା, ତା' ନ ହୋଇ ଗୋଟିଏ ମାତ୍ର ଅତିକାୟ ପ୍ରଶ୍ନ ସମସ୍ତଙ୍କୁ ଘୋଡ଼େଇ ପକାଏ । 'ଏ ସୃଷ୍ଟି କ'ଣ ?'—'ଏହାର ଉତ୍ପତ୍ତି କେଉଁଠାରୁ, ସ୍ଥିତି କେଉଁଠି, ବିଳୟ କେଉଁଠାରେ ?'—'ଶାସ୍ତ୍ର ମତରେ 'ଜନ୍ମାଦ୍ୟସ୍ୟ ଯତ' କହିଲେ କାହାକୁ ବୁଝାଏ ?' ପ୍ରଶ୍ନକର୍ତ୍ତା ବିହ୍ୱଳ ହୋଇ ନିଜକୁ ଅନାଏ । 'ମୁଁ କିଏ ?—କେଉଁଠାରୁ କେଉଁଠାକୁ ମୋର ଏ ଦୁର୍ଗମ ଯାତ୍ରା ?'—ଖୁବ୍ ଗମ୍ଭୀରରେ ପୁଣି ଗୁଞ୍ଜରି ଉଠେ 'ସତ୍ୟ କ'ଣ ?' 'ବ୍ରହ୍ମ କଣ ?' 'ଆତ୍ମା କ'ଣ ?' —ଏ ପ୍ରଶ୍ନଗୁଡ଼ିକ ସତେ ବା ଲକ୍ଷ ଲକ୍ଷ ମହଣ ଲୁହାରେ ତିଆରି । ତାରାମଣ୍ଡଳ ଯେପରି ସେମାନଙ୍କର ଶୀର୍ଷଗୁଡ଼ିକ ଉହାର ରହିଛନ୍ତି; ଦୁର୍ଲଙ୍ଘ୍ୟ, ଦୁରଧିଗମ୍ୟ, କୁହାର କଣ୍ଠାମଣିତ ଗୁଡ଼ିଏ ସମାଧିସ୍ଥ ପୁରୁଣ ପ୍ରଶ୍ନ । ଋଷି ପିପ୍ପଳାଦ

Digitized by srujanika@gmail.com

ମଧ୍ୟ ଏମାନଙ୍କୁ ମନ୍ତ୍ରମନରେ ଆସନ ଦେଇ ବିନମ୍ର ପ୍ରକାଶ କରନ୍ତି । ଅନେକ ବଲ୍ଲିବର୍ତ୍ତି ପରେ ଛ'ଟି ପ୍ରଶ୍ନ ବିରାଟ ପିନାକ ପରି ହୁଳ ଟେକି ରହନ୍ତି । ପ୍ରଶ୍ନୋପନିଷଦ ସରିଯାଏ । ଉତ୍ତରର ଉତ୍ତରୀ ସେ ବିଶାଳ ପ୍ରଶ୍ନମାନଙ୍କୁ ଘୋଡ଼େଇ ପାରେନାହିଁ ।

ମହାବଳ ପାଳିଲି ପରି ଏଭଳି ପ୍ରଶ୍ନଗୁଡ଼ିକୁ ଧାରଣ କରି ବଞ୍ଚିବା ଏକ ବିଡ଼ମ୍ବନା; କିନ୍ତୁ ବଞ୍ଚିବାକୁ ହୁଏ । ଭୂମି ବିଦାରି ଯେତେବେଳେ ଏ ମହାଦ୍ରୁମ ସବୁ ଉଠନ୍ତି, ଆକାଶକୁ ଶାଖା ମେଲି ମାଡ଼ି ଯାଆନ୍ତି, ତାଙ୍କୁ ପୋଷଣ କରିବା ହିଁ ଜୀବନର ଏକମାତ୍ର ଲକ୍ଷ୍ୟ ହୋଇଯାଏ । ଭିକ୍ଷାଥାଳି ଧରି ହିମାଳୟଠାରୁ କୁମାରିକା ଯାଏ ବହୁ ଆଶ୍ରମ, ଅନେକ ଗୁରୁ ଏବଂ ଶାସ୍ତ୍ରର ଆଶ୍ରୟ ନେବାକୁ ହୁଏ । ଏ ଅତିକାୟ ସନ୍ତାନଙ୍କୁ ପରିତୃପ୍ତ କରିବାକୁ ଆପ୍ରାଣ ଚେଷ୍ଟା ଚାଲେ; କିନ୍ତୁ ପରିଶେଷରେ ହୁଏତ ଜିଜ୍ଞାସୁ ଜୀବନର ଅବସାନ ଘଟେ ଏବଂ ଯେଉଁ ମହାଶୂନ୍ୟରୁ ସେ ଦ୍ରୁମଗୁଡ଼ିକର ବୀଜ ଝରିତ ହୋଇ ଆସିଥିଲା, ସେମାନେ ମଧ୍ୟ ସେଇ ମହାଶୂନ୍ୟରେ ଏକୀଭୂତ ହୋଇଯାଆନ୍ତି । ପୁଣି ସଜ ଉଣ୍ଡି କାହା ଭିତରେ ପ୍ରକଟ ହେବାପାଇଁ ଅପେକ୍ଷା କରନ୍ତି ।

ଏହିସବୁ ମୌଳିକ ପ୍ରଶ୍ନକୁ ଆଶ୍ରୟ କରି ଆଉ ଗୋଟାଏ ପ୍ରକାର କଣ୍ଟା ଲଇ ମଧ୍ୟ ମାଡ଼ିଥାଏ । ସେ ଦ୍ୱନ୍ଦ୍ୱ ସଂଶୟର ଲଇଗୁଡ଼ିକ କିନ୍ତୁ ନିଜେ ଠିଆହେବାକୁ ବଳ ପାଆନ୍ତିନାହିଁ । ଯଦି ସେପରି କୌଣସି ଠାଣୁଆ ଶାଳଗଛଟାର ଆଶ୍ରୟ ମିଳିଗଲା, ତେବେ ସେମାନେ ବ୍ୟାପି ଯାଆନ୍ତି ଶିଖ ପର୍ଯ୍ୟନ୍ତ । ମୂଳ ଉଦ୍ଭିଦ ସମ୍ପୂର୍ଣ୍ଣ ଲୁଚିଯାଏ । କେବଳ ଧୂଆଁ ପରି ସଂଶୟର ଧୂସର ପତ୍ର ବେଢ଼ି ଯାଏ ଚତୁର୍ଦ୍ଦିଗରୁ । ସଂଶୟ ପ୍ରଶ୍ନ ନୁହେଁ । ତାହା ଏକ ଅନୁକରଣ, ଏକ ଧୂମବସ୍ତୁ, ଗୋଟାଏ ପ୍ରକାର ଆତ୍ମଘାତୀ ଅତିପ୍ରଶ୍ନ । ସଂଶୟର ନିର୍ଦ୍ଦିଷ୍ଟ ବେଳାଭୂମି ନାହିଁ । ସେ ସମୁଦ୍ର ଲହରୀ ପରି ଆଘାତ ଯାତ ନିୟମରେ ଶୃଙ୍ଖଳିତ ନୁହେଁ । ଘନ କୁହୁଡ଼ିର ସର୍ବଗ୍ରାସୀ ରୂପ ଏ ସଂଶୟର । ପ୍ରଶ୍ନକୁ ପ୍ରଶ୍ନ କଲେ, ପ୍ରଶ୍ନକର୍ତ୍ତାଙ୍କୁ ମଧ୍ୟ ପ୍ରଶ୍ନ କଲେ, ଏକ ଅଚଳ ଅବସ୍ଥା । ମୌଳିକ ପ୍ରଶ୍ନଗୁଡ଼ିକ ଜ୍ୱଳନ୍ତ ଆବାହନ; କିନ୍ତୁ ସଂଶୟ ଏକ ବିଭ୍ରାନ୍ତି, ଏକ ହତାଶା, ଗୋଟାଏ ଅତଳ ବିବର । ସଚେତନ ମନ ସତେ ବା କୌଣସି ଦର୍ପଣରେ ନିଜକୁ ନିଜେ ଉପହାସ କରୁଛି । ବିଶ୍ୱାସମାନେ ସେ ଖାଇ ଗୋଡ଼ାଏ । ସ୍ଥିର ଭୂମି ସେ ଦେବାକୁ ଚାହେଁନାହିଁ । ସମ୍ପୂର୍ଣ୍ଣ ଶୂନ୍ୟଭୂମିରେ ଗତି ସମ୍ଭବ ହୁଏନାହିଁ । ତୀବ୍ର ଜ୍ୱାଳା ନିଜ ଜଠର ଭିତରେ ଜଳି ଜଳି ନିଜକୁ ନିଜେ

Digitized by srujanika@gmail.com

ଜୀର୍ଣ୍ଣ କରିଯାଏ । ଏ ଜ୍ୱାଳା କିନ୍ତୁ ବହ୍ନିମାନ ନୁହେଁ । ତୃଷାଗ୍ନି ପରି ଦିଗନ୍ତର ଅନ୍ତର୍ଦ୍ଦାହ । ସଂଶୟ ଆତ୍ମାର ଯାତନା; ସଚେତନତାର ଏକ ବିଡ଼ମ୍ବନା । ସଂଶୟ ଜାଲରେ ମନ ନିଜେ ବିଡ଼ମ୍ବିତ, ପରାଭୂତ ।

ମନକୁ ଜୟ କରିବାକୁ ଅନ୍ୟ ଏକ ପନ୍ଥା ମଧ୍ୟ ସୁଧିଜନ କହୁଛନ୍ତି । ପ୍ରଶ୍ନ ଯଦି ମନର ବଳିୟା ହୁଏ, ମନକୁ ଗୁଡ଼ିଦେଇ ପାରିଲେ ବୋଧହୁଏ ପ୍ରଶ୍ନ ମଧ୍ୟ ଖସି ପଡ଼ିବ; କିନ୍ତୁ ମନକୁ କିଏ ଧାରଣ କରିଛି, କାହାର ଇଚ୍ଛାରେ ମନ ପ୍ରେରିତ ହୋଇଥାଏ, 'କେନେଷିତଂ ପ୍ରେଷିତଂ ମନ ?' ଏ ପୁଣି ଆଉ ଏକ ପ୍ରଶ୍ନ । କଚ୍ଛପ ପରି ମନକୁ ଗୋଟେଇ ଆଣି ପାରିଲେ, ମନର ବିପରୀତ ଧର୍ମ ଅମନୀ ଭାବରେ ବୁଡ଼ି ପାରିଲେ, ସାତ ଲହଡ଼ା ପାରିହୋଇ ଗମ୍ଭୀର ଭିତରକୁ ପଶିଯାଇ ହେବ । ହେବ କି ?···ହୋଇଥିଲି କି ?···ହେଲେ, ତେଣିକି କ'ଣଟାଏ ହୋଇଯିବ କି ?···ଚୁପ୍ ! ଏ ସବୁ ଚଗଲି ମନର ଖେଳ ! ଏଭଳି ମୁଣ୍ଡଟେକି ଯେ ଉଠିଲି ତାକୁ ତତ୍‌କ୍ଷଣାତ୍ ଶ୍ୱାସରୋଧି ମାରିପକାଅ । ମନକୁ ନିଷ୍ପନ୍ଦ କରି ଦିଅ । ତା'ପରେ ଯାହା ଶାସ୍ତ୍ରେ କହନ୍ତି ଏବଂ ମହାଜନମାନେ କହୁଛନ୍ତି, ସେଇ ଈଶ୍ୱର ବର୍ତ୍ତି ଚିନ୍ମୟ ସତ୍ତା ଚିଦାକାଶରେ ଉଇଁବେ !

ସବ୍‌ଜାନତା ଉତ୍ତରଦାତାଙ୍କର ଏ ମହାର୍ଘ୍ୟ ଶାସ୍ତ୍ର ଉଦ୍ଧୃତି ପାଇଁ ଧନ୍ୟବାଦ; କିନ୍ତୁ ସୃଷ୍ଟିର ପ୍ରତିବିନ୍ଦୁରେ ସ୍ପନ୍ଦିତ ପ୍ରଶ୍ନ ଯଦି ଲିଭିଯାଏ, ସୃଷ୍ଟି ନିଜେ ନିର୍ବାପିତ ହୋଇଯିବ । ତା'ର ବୀଜକୋଷ ଶୂନ୍ୟ ହୋଇଯିବ । ଉଦ୍‌ବର୍ତ୍ତନର ଧାରା ଶୁଖିଯିବ, ପ୍ରବାହ ସ୍ତବ୍ଧ ସମ୍ମୂର୍ଚ୍ଛିତ ହୋଇଯିବ । ଏଣୁ ସେଇ ଘୋର କାଳରାତ୍ରି ଭିତରେ ଯେ ପ୍ରଥମେ ନିଃଶ୍ୱାସ ତୋଳନ୍ତି, ଯାହାଙ୍କର ପ୍ରଥମ କାମନାର ସ୍ପନ୍ଦନରେ ସୃଷ୍ଟି ନିକ୍ୱଣିତ ହୁଏ; 'ଏକ କି ଅନେକ'ର ନିର୍ବାଚନ ପୂର୍ବରୁ ଗୋଟାଏ ଜଳସ୍ତମ୍ଭବତ୍ ମୁହୂର୍ତ୍ତରେ ଯେଉଁ ଈଶ୍ୱର ପୁରୁଷ ଚଞ୍ଚଳ ହୋଇ ଉଠନ୍ତି, ସେଇ ଘନନୀଳବର୍ତ୍ତି ଅନନ୍ତ ଆଦି ପ୍ରଶ୍ନଙ୍କୁ ନମସ୍କାର !!

Digitized by srujanika@gmail.com

# ଅନ୍ଧାର

ଭୂତା ପ୍ରେତ ଭୂତ ଆମର ଚେତନାରୁ ଯାଏନାହିଁ । ଏଣୁ ଅନ୍ଧାରରେ ଅଛି ବୃକ୍ଷ ବୋଦାଝାଡ଼ ହୋଇ ଦେଖାଇଦବା ଆମର ଗୋଟାଏ ଦୁର୍ଲଙ୍ଘ୍ୟ ପ୍ରବୃତ୍ତି । କମ୍ବଳ ଭିତରେ ମିଟିମିଟି ଅନେକ ବର୍ଣ୍ଣ ପଡ଼ିରହନ୍ତି, କିନ୍ତୁ ଖୋଲଖୋଲି ଅନ୍ଧାରକୁ ଗ୍ରହଣ କରି ବିଚରଣ କରି ପାରୁନା; କାରଣ ଆମେ ନିଶାଚର ନୋହୁ । ଆମେ ଅନ୍ଧାରକୁ ଡରୁ, ତାକୁ ଘୃଣାକରୁ, ତାକୁ ନାଶ କରିବାକୁ ସବିତା ମଣ୍ଡଳରେ ଥିବା ଜ୍ୟୋତିଷ୍ମାନ୍ ପୁରୁଷଙ୍କୁ ଆବାହନ କରୁ । ଆମେ ସବୁ କୁଆଡ଼େ ଆଲୋକର ସନ୍ତାନ । ଏଣୁ ଅନ୍ଧାରକୁ ଜୟ କରିବା, ତାକୁ ଦୂର କରିବା ଆମର ସହଜାତ କର୍ତ୍ତବ୍ୟ ।

କିନ୍ତୁ ଆଲୁଅକୁ ଜୀବନ ବୋଲି ଯେତେ ଯାବୁଡ଼ି ଧରିଲେ ମଧ୍ୟ ସେ ଅନିବାର୍ଯ୍ୟ ଭାବରେ ଗୋଟାଏ ପଶ୍ଚିମରେ ନିଶ୍ଚୟ ବୁଡ଼ିଯାଏ ଏବଂ ସେମିତି ଅନିବାର୍ଯ୍ୟ ଭାବରେ ଅନ୍ଧାର ମାଡ଼ିଆସେ । ସେ ଦୁହେଁ କାହିଁ କେଉଁ ଅନନ୍ତ କାଳରୁ ଗୋଡ଼ିଆ ଗୋଡ଼େଇ ହୋଇ କେହି କାହାକୁ ଛୁଇଁ ପାରିନାହାନ୍ତି, ଟପି ପାରିନାହାନ୍ତି । ଆମେ ଚାହିଁଲେ ସେ ଅନ୍ଧାରକୁ ରୋକିଦେବୁ, ଏମନ୍ତ ନୁହେଁ । ଗୋଲକାର ପୃଥିବୀ ତା' ମେରୁଦଣ୍ଡରେ ବୁଲୁଥିବା ପର୍ଯ୍ୟନ୍ତ ଏବଂ ସୂର୍ଯ୍ୟପିଣ୍ଡଟି ନ ଲିଭି ଜଳୁଥିବା ପର୍ଯ୍ୟନ୍ତ ଆଲୁଅ ଯେତିକି ପରିମାଣରେ ସତ୍ୟ ଏବଂ ଅନିବାର୍ଯ୍ୟ, ଅନ୍ଧାର ମଧ୍ୟ ସେତିକି ପରିମାଣରେ ସତ୍ୟ ଏବଂ ଅନିବାର୍ଯ୍ୟ ।

କୌଣସି ଏକ ଆଦିମ ନିସ୍ତରଙ୍ଗ ଅନ୍ଧାରରୁ ହିଁ ବୋଧହୁଏ ଆଲୁଅର ଜନ୍ମ । ସେ ଏକ ବିଦ୍ରୋହ, ଏକ ଉଦ୍‌ବର୍ତ୍ତନ । ଏଣୁ ତା'ର ଦୁର୍ଭେଦ୍ୟ ବ୍ୟୂହ ଭିତରକୁ ତାକୁ ଫେରେଇ ନେବାପାଇଁ ଅନ୍ଧାର ତା'ପଛରେ ଗୋଡ଼େଇ ଚାଲିଛି । ପଳାତକ ଆଲୁଅ ଅମାନିଆ ଶିଶୁ ପରି ହସରେ ଫାଟି ପଡ଼ୁଛି, ବୁଣି ହୋଇଯାଉଛି । ସେଇ ପରିମାଣରେ ଝରିଯାଉଛି, ସରିଯାଉଛି । ଶେଷରେ ଏ ସନ୍ତାନଟି ସେଇ ଆଦିମ ଜନୟିତ୍ରୀର କୋଡ଼ ଭିତରେ ହିଁ ବିଲୟ ଲଭିବ । ଅନନ୍ତ ଆକାଶର ଅସଂଖ୍ୟ

Digitized by srujanika@gmail.com

ଆମ୍ଭେମାନେ ବାହାରି ଆସିବେ । ମସ୍ତରଙ୍କ ଅନ୍ଧାର ସୃଷ୍ଟି ହାତରେ ଶୋଇଯିବ ଅନନ୍ତକାଳ ପାଇଁ !

ଏ ସବୁ ନ ଜାଣି ମଧ୍ୟ ପିଲାଟିଏ ଅନେକ ଅନ୍ଧାରକୁ ଡରେ; କାରଣ ତା'ଭିତରେ ସବୁ ସମ୍ଭବ । ସୃଷ୍ଟି ଆରମ୍ଭରେ ଯେମିତି କେବଳ ଗୁଡ଼ାଏ ଉପାଦାନ ଥିଲା କିନ୍ତୁ ବସ୍ତୁ ନଥିଲା, ଏଣୁ ସେ କୌଣସି ବସ୍ତୁର ସମ୍ଭାବନା ବି ଥିଲା ସେମିତି ଭିତର ଅନିଶ୍ଚିତତା । ସେଇଟା ଖୁଣ୍ଟ ନ ହୋଇ ମଣିଷ ହୋଇପାରେ, ଘୋଡ଼ା ନ ହୋଇ ଗାଡ଼ି ହୋଇପାରେ ! ସେତିକିବେଳେ ଡାହାଣୀ, ଚିରୁଗୁଣୀ, ମଳମଣ୍ଡିଷଙ୍କ ପ୍ରେତ, ଯକ୍ଷ, ରକ୍ଷ, ପିଶାଚ ସବୁ ଫିଟି ଆସନ୍ତି; କଳ୍ପନା କରୁ କରୁ ସେ ଆସି ଠିଆ ହୋଇଯାଆନ୍ତି । ଆମେ କିନ୍ତୁ ଗୁହ୍ମଁ ନା ଏମିତି ହେବ୍ ଠୋକ୍ କଥା । ଏଣୁ କିଛି ନ ଭାବ ହୁଏନ୍ତ ଶୋଇଯାଉ । ଭୟ ଆମର ଅତି ଆଦିମ ମୌଳିକ ପ୍ରବୃତ୍ତି ।

ଆମେ ଅନ୍ଧାରକୁ ଡରୁ ସତ; କିନ୍ତୁ ସତ୍ୟକୁ ମଧ୍ୟ ଡରୁ । ତାକୁ ଅନେକ ପ୍ରକାର ଆବରଣରେ ଘୋଡ଼େଇ ମୁଖା ପିନ୍ଧେଇ ରଖିଥାଉ । ଏ ଜଗତ ରଙ୍ଗମଞ୍ଚରେ ସୂର୍ଯ୍ୟଙ୍କ ଅହରହ ଜଳୁଥାଏ । ଆମେ ତା' ଆଲୁଅରେ ଚମତ୍କାର ଅଭିନୟ କରୁ । ଅନେକ ବେଶ ପୋଷାକ, ଛଇ ଛଟାର ଅଟାଟୋପ ହାକିମ, ଅମଲ, ମନ୍ତ୍ରୀ, ମନ୍ତ୍ରୀଆଦିଙ୍କର ଭିନ୍ନ ଭିନ୍ନ ଭାବଭଙ୍ଗୀର ପରିପାଟି । ଜଣେ ଜଣେ ଏକାଧିକ ଭୂମିକାରେ ଅଭିନୟ କରି କରି କ୍ଲାନ୍ତ ହୋଇ ପଡ଼ନ୍ତି । ସଙ୍ଗୀତ, ସାହିତ୍ୟ, ସଭାସମିତି ଓ କଳା ବିଜ୍ଞାନର ଭିନ୍ନ ଭିନ୍ନ ଭୂମିକାରେ କୋଟି କୋଟି ଅଭିନେତା ଏ ରଙ୍ଗମଞ୍ଚରେ ନାଚ ଯାଆନ୍ତି । ସୂର୍ଯ୍ୟଦେବ ମଧ୍ୟ କ୍ଲାନ୍ତ ହୋଇଯାଏ, ତା'ର ଅପଲକ ଆଖି ବୁଜି ହୋଇଯାଏ । ସ୍ୱାଂଗରେ ଅସେ ଅନ୍ଧାର, ସମସ୍ତଙ୍କୁ ଘୋଡ଼େଇ ଦେଲାପରି, ସମସ୍ତଙ୍କୁ ପରସ୍ପରଠାରୁ ଲୁଚେଇ ଦେଲାପରି ଗୋଟିଏ ଆବରଣ । ଏଇଟା ପ୍ରେକ୍ଷାଳୟ । ଏଇଠି ସବୁ ଅଭିନେତା ନିଜ ନିଜ ମୁଖା ଫିଟେଇ ପକାନ୍ତି । କିଏ ଝାଳ ପୋଛେ କିଏ ବଡ଼ ଟାଣେ । ବ୍ରମଲୀଳାର ହନୁମାନ ତା' ଲାଙ୍ଗୁଡ଼ ଖସେଇ ଥୋଇଦିଏ ।

ଅନ୍ଧାରରେ ସମସ୍ତେ ତାଙ୍କ ମୌଳିକ ସତ୍ତାକୁ ଫେରିଆସନ୍ତି । କିଛି ଲୁଚେଇବାର ବା ଘୋଡ଼େଇବାର ପ୍ରୟୋଜନ ନ ଥାଏ । ଅଭିନୟ ନ କରି ଖୁବ୍ ନିବିଡ଼ ଭାବରେ ମଣିଷ ବଞ୍ଚେ ଏଇ ଅନ୍ଧାରରେ । ତାକୁ ଅନେକ ଉଶ୍ୱାସ ଲାଗେ, ସ୍ୱାଭାବିକ ଲାଗେ ଏବଂ ହୃଦୟମାନେ କେମିତି ଏ ଜଗତ ପଦଗୁଡ଼ାକୁ ଅଶ୍ଳୀଳ କହି

Digitized by srujanika@gmail.com

ସେ ଦୋହଳିକ ଚଳାଉଥିଲି ଗୋଟାଏ ମାମାଙ୍କ ଆଲୁଅର କୋଳାହଳ ଭିତରେ । ଏଇ ଅନାବୃତ ନିଚ୍ଛକ ମୁହୂର୍ତ୍ତଗୁଡ଼ାକ ଜୀବନର ମୌଳିକ ଉପାଦାନରେ ସମୃଦ୍ଧ, ବଞ୍ଚିବାର ସତ୍ୟତାରେ ମଜ୍ଜା ପର୍ଯ୍ୟନ୍ତ ଭରପୂର । ଆଲୁଅଠାରୁ ଅନ୍ଧାର ବେଶି ସତ୍ୟ, ବେଶି ଘନିଷ୍ଠ, ବେଶି ଆପଣାର । ଆମେ ଅନ୍ଧାରକୁ ହୁଏତ ଭୟ କରୁନା । ଆମେ ତାକୁ ଭଲ ପାଉ । ମନେ ମନେ ଝୁରୁଥାଉ । ଅଭିନୟର ଭିଡ଼ାଓଟର ଭିତରେ ମଧ୍ୟ ଅନ୍ଧାରକୁ ଲୋଡ଼ୁଥାଉ । ଆଲୁଅ ଭଳି ଅନ୍ଧାର, ତା' ଏତେ ନିର୍ମମ ନୁହେଁ । ସେ ଖିନ୍‌ଭିନ୍ ସବୁ ଖୋଲି ଦେଖାଏନାହିଁ । ଘୋଡ଼େଇ ପକାଏ, ନିବିଡ଼ ଭାବରେ ଅନୁଭବ କରିବାକୁ ସୁଯୋଗ ଦିଏ । ଆମ ଭିତରେ ଯଦି ଆଲୁଅର ଉପନିବେଶ କିଛି ଦିଶେ, ସେ ସବୁ ଯାଯାବର ସ୍ରଷ୍ଟା । ତା'ର ନୂଆ ବାସିନ୍ଦା ସବୁ ଶ୍ୱେତାଙ୍ଗ ଶାସକ; କିନ୍ତୁ ଭିଟାମାଟିକୁ ଲାଗି ଯେତେ ସବୁ ମଳିଚ୍ଛୁଆ ଘୁଇଭଳି ନୀରବରେ ପହଁରି ଯାଉଛନ୍ତି, ଯାହାଙ୍କୁ ଗଣି ହୁଏନାହିଁ, ପାରି ହୁଏ ନାହିଁ, ଯେଉଁମାନେ ସେଇ ମାଟିଭଳି ପୁରୁଣା ସେମାନେ ସବୁ ଆମର । ଆମ ଭିତରେ ଆଲୁଅ ପଶିଗଲେ, ଆମେ ଗଛମୂଳେ, ବୁଦାମୂଳେ ଲୁଚିଯାଉ । ସେ ଓହରିଗଲେ; ଆମେ ପରସ୍ପରର ଗନ୍ଧ ବାରି ପାଖେଇ ଆସୁ । ପ୍ରାଚୀନ ଅନ୍ଧାରର ସନ୍ତାନ ଆମେ । ଅନ୍ଧାର ଆମର ଧାତ୍ରୀ ଓ ଜନନୀ; ତାକୁ ଭୟକରିବା ଏକ କୁସଂସ୍କାର ।

ନିଃସଙ୍କୋଚ ଅନ୍ଧାର ଭିତରେ ଆମେ ସମସ୍ତେ ଗୋଟିଏ ଗୋଟିଏ ଦ୍ୱିପଦ ପ୍ରାଣୀ । ଆମ ଗୁହାଆଡ଼େ ଆମର ଅସଂଖ୍ୟ ଲୋମଶ ପୂର୍ବପୁରୁଷଙ୍କ ଉଷୁମ ଆମେ ସେଇଠି ଅନୁଭବ କରୁ । ଆମକୁ କିଛି ହୁଏତ ଦିଶେନାହିଁ; କିନ୍ତୁ ସବୁ ଅନୁଭବ କରିହୁଏ । ଚମଡ଼ାତଳକୁ ସବୁ ଅନ୍ଧାର । ଦେହ ଖୋଳଭିତରେ ଆମର ଅଜସ୍ର ନାଡ଼ୀ ସ୍ପନ୍ଦିତ ହୁଅନ୍ତି, ଖାଦ୍ୟ ପରିପାକ ହୁଏ, ପ୍ରାଣବାୟୁ ଯାତାୟାତ କରେ । ଏଣୁ ଅନ୍ଧାରରେ ହିଁ ବୁକୁ ଧୁକୁଧୁକୁ ହେବା ଆମେ ଅନୁଭବ କରୁ, ଜଠରରେ ନିବିଡ଼ ଭାତି ଅନୁଭବ କରୁ ।

ଆଲୁଅରେ ଦୃଷ୍ଟି ଫେରିଆସେ, ବ୍ୟବଧାନ ଫେରିଆସେ । ଦୃଷ୍ଟିରେ ଦୂରତା ଅନିବାର୍ଯ୍ୟ; କିନ୍ତୁ ସ୍ପର୍ଶରେ ବ୍ୟବଧାନ ନାହିଁ, ଦୂରତା ନାହିଁ । ତୃଷ୍ଣାପୂ ସନ୍ତରର ସମ୍ଭାବନା ନାହିଁ । ସ୍ପର୍ଶ ଆଉ ଏକ ପ୍ରକାର ଦୃଷ୍ଟି । ପ୍ରତି ଲୋମକୂପରେ ସହସ୍ରାକ୍ଷ ପରି ଉତ୍ତାପକୁ ପିଇହୁଏ, ଶିହରଣକୁ ଶୋଷି ହୁଏ । ଆଲୁଅ ଲିଭିଗଲେ ଆଖି ବୁଜିଯାଏ ସତ; କିନ୍ତୁ ଆଉ ଗୁଡ଼ାଏ ଇନ୍ଦ୍ରିୟ ମନକୁ ମିଶେଇ ମାତିଉଠନ୍ତି । ଅନ୍ଧାରରେ ଗୁଞ୍ଜରଣ ବେଶି ସଙ୍ଗୀତମୟ, ସ୍ୱାଦ, ଗନ୍ଧରେ ଆତୁର ଅନେକ

Digitized by srujanika@gmail.com

ପାତକତା । ଅନ୍ଧାର ସବୁ ସାଉଁଟି ଆଣେ, କେନ୍ଦ୍ରୀଭୂତ କରିଦିଏ, ଗମ୍ଭୀରକୁ ଟାଣିନିଏ ! ଆଲୋକ ବିକ୍ଷିପ୍ତ କରିଦିଏ; ବିସ୍ତୃତ ବିକେନ୍ଦ୍ରିତ କରିଦିଏ । ଆଲୋକ ଅପେକ୍ଷା ଅନ୍ଧାର ବେଶି ଜୀବନଧର୍ମୀ, ବେଶି ବାସ୍ତବ ।

ବାସ୍ତବ ହେବା କିଛି ନିନ୍ଦ କଥା ନୁହେଁ । ନିଜେ ଯାହା, ତାକୁ ସହଜ ଭାବରେ ଖୋଲିଖୋଲି ମାନିନେବା ମିଥ୍ୟା ମଧ୍ୟ ନୁହେଁ । ତାକୁ ମିଥ୍ୟା ବୋଲି କହିଦେଇ ପରିହାର କରିଦେବା କିଛି ଖେଳଘର ମଧ୍ୟ ନୁହେଁ । ପ୍ଲାଟୋ କହିଲେଭଳି ଆମେ ସବୁ ଅନ୍ଧାରରେ ଗୁମ୍ଫା ଭିତରେ ବନ୍ଦୀ ଥାଉ । ଆମ ଭିତରୁ ଜଣେ ଫିଟିଯାଇ ଆଲୋକର ସନ୍ଧାନ କରେ । ସେହିଭଳି 'ପ୍ରମିଥିଅସ୍' ମାନଙ୍କୁ କେହି ଅସ୍ୱୀକାର କରୁନାହିଁ; କାରଣ ମୂଳତଃ ଆଲୋକକୁ କେହି ଅସ୍ୱୀକାର କରୁନାହିଁ; କିନ୍ତୁ ଯେତେବେଳେ ସେଇ ଆଲୋକ-ସନ୍ଧାନୀମାନେ ଆସି ଅନ୍ଧାର ରାଜ୍ୟରେ ବିପ୍ଳବର ସୂତ୍ରପାତ କରନ୍ତି, ଆମକୁ ଟିକିଏ ହସ ମାଡ଼େ । ଆସାମର ଚା'ବଗିଚାରେ ଚାରିମାସ କାଟି ଆସିବାପରେ ଓଡ଼ିଆ କୁଲିସର୍ଦ୍ଦାର ଘରେ ଆସି ହିନ୍ଦୀ କହେ, ଭାବ କରେ ଯେ ସେ ଆଉ ଓଡ଼ିଆ ନୁହେଁ; ଏଠିକାର ଭାଷା ତା'ର ଆଉ ପଇଠୁ ନାହିଁ ! ଉଷା, ଅଗ୍ନି ବା ସବିତା ମାଧ୍ୟମରେ ବହୁବାର ଆଲୋକର ଆବାହନ କଲେ ସୁଦ୍ଧା ମନୀଷିର ମୌଳିକ ସତ୍ୟ ବିଷୟରେ ବେଦ ନୀରବ ନୁହେଁ । ପୁରାଣର ବିଶ୍ୱାମିତ୍ର ବହୁ ତପସ୍ୟା ପରେ ମଧ୍ୟ ମେନକା ପାଖରେ ସମସ୍ତ ଆବରଣ ତଳେ ଲୁଚି ରହିଥିବା ନିଜର ଅନାବୃତ ସତ୍ତାକୁ ସ୍ୱୀକାର କରନ୍ତି ।

ସେମାନେ କହିବା ଅନୁସାରେ ଏ ସତ୍ତାଟି କୁଆଡ଼େ ଆମର ଜାନ୍ତବ ପରଂପରା ଏବଂ ସେଥିପାଇଁ ଆମକୁ ଲଜ୍ଜିତ ହେବା ଉଚିତ । ଲଜ୍ଜିତ ହେବାକୁ ଆମର ଆପତ୍ତି ନାହିଁ; କିନ୍ତୁ କାହିଁକି, ଏବଂ କାହା ପାଖରେ ? ଯଦି ସବୁଠାରେ ଏଇ ଜନ୍ତୁଟି ହିଁ ଅନିବାର୍ଯ୍ୟ ସତ୍ୟ, ତା'ପାଇଁ ଲଜ୍ଜା କରିବାର ପ୍ରୟୋଜନ କାହିଁ ? ଜଙ୍ଗଲ ରାଜ୍ୟରେ ତ' ପରିଧେୟର କିଛି ଅର୍ଥ ନାହିଁ ଏବଂ ଅର୍ଥ ନାହିଁ ସେପରି କୌଣସି ଅଭିନୟର । ଜନ୍ତୁ ଜୀବନରେ ଅସଂଖ୍ୟ କ୍ଷୁଧା ଏବଂ ସେଗୁଡ଼ିକ ଖୁବ୍ ସ୍ୱାଭାବିକ । ସେଗୁଡ଼ିକୁ ଲୁଚେଇ ହୁଏନାହିଁ, ହୁଏତ ସନ୍ତୁଷ୍ଟ ମଧ୍ୟ କରିହୁଏନାହିଁ । ତା'ବୋଲି ସେମାନଙ୍କୁ କମ୍ବଳ ଘୋଡ଼େଇ ଦେଇ ଉପରେ ସଫେଇ ଦେଖେଇ ହେବା ମିଥ୍ୟାଚାର । ଯେତେ ଡାଳପତ୍ର କାଟିଲେ ମଧ୍ୟ ଉଦ୍ଭିଦ ମରିଯାଏନାହିଁ; ତା'ର ଜଙ୍ଗଲ ଚେରଗୁଡ଼ିକ ଅନ୍ଧାର ମାଟି ଭିତରେ ମୁହଁ ବୁଡ଼େଇ ପ୍ରାଣରସ ଟାଣୁଥାନ୍ତି । ପୁଣି ଶାଖା ମେଲି ଯାଏ, ପତ୍ର କଢ଼ ଉଙ୍କର ଆସନ୍ତି । ଚେର ଲଗାଉ ଭିଡ଼ ଫୋପାଡ଼ିଦେଲେ ଯେଉଁ

Digitized by srujanika@gmail.com

ମାଟିପିଣ୍ଡକୁ ସେ ନିଜସ୍ୱ ଭୁଜରେ ଗୁଡ଼େଇ ଧରି ରଖିଥିଲେ; ସେ ନିରାଧାର ଝାସି ପଡ଼ିବ । ଜୀବନର ସମସ୍ତ କ୍ଷୁଧା ନିର୍ବାପିତ ହୋଇଗଲେ, କେବଳ ନିଷ୍ପନ୍ଦ ଖାର ପଡ଼ି ରହିବ । ଜୀବନର କ୍ରିୟା ହିଁ ଯଦି ଜୀବନ ହୁଏ, ତେବେ କ୍ଷୁଧା ନଥାଇ ବଞ୍ଚିବା ସମ୍ଭବ ନୁହେଁ । ବଞ୍ଚିବାକୁ ହେଲେ, ଜନ୍ତୁଟି ହିଁ ବଞ୍ଚେ । ତା' ଉପରେ ଯେତେ ରଙ୍ଗ ମଣ୍ଡେଇଲ ଯେତେ ମୁଖା ଖଞ୍ଜିଲେ ମଧ୍ୟ ସେ ନିର୍ଭୁଲ ଭାବରେ ସେଇ ଜନ୍ତୁ ।

ଅନ୍ଧାର ଏଇ ଆଦିମ ଜନ୍ତୁଟିକୁ ଜୁଗାଇ ଦିଏ । ଦିନ ଆଲୁଅରେ ଯେଉଁ ଜଞ୍ଜିରରେ ସେ ବନ୍ଧା ପଡ଼ିଥିଲା, ରାତିରେ ସେଇଟା ଫିଟିଯାଏ ଏବଂ ଫିଟିଯାଏ ବୋଲି ରକ୍ଷା ହୋଇଯାଏ । ନାରୀ ଏବଂ ପୁରୁଷ ନିରାବରଣ ପରସ୍ପରକୁ ସ୍ୱୀକାର କରନ୍ତି । ସୃଷ୍ଟିର ଆଦିମ ଅନୁଶାସନ ଜାରି ରହେ । ନଚେତ୍ କେବଳ ଅଭିନୟ ଏବଂ ମିଛିମିଛିକା ଖେଳ ଭିତରେ ଜୀବନ ସରିଯାଆନ୍ତା । ଜନ୍ମପୂର୍ବରେ ଅମାପ ଅନ୍ଧାର ଏବଂ ମୃତ୍ୟୁର ଅନ୍ଧାର ଅପରିସୀମ । ଏ ଦୁଇଟି ବାଡ଼ବେଢ଼ା ଭିତରେ ମଣିଷର ଚପଳତା, ଆଲୁଅ ଅନ୍ଧାରର ଲୁଚକାଳି ଭିତରେ ସରିଯାଏ । ଅନ୍ଧାରରୁ ଆସି ଅନ୍ଧାର ଭିତରେ ଆମେ ପୁଣି ପଶିଯାଉ । ରଙ୍ଗମଞ୍ଚର ଉଭୟ ପାଖେ ଅନ୍ଧାର । କେବଳ ଏ ପାଖରୁ ସେ ପାଖକୁ ଯିବା କଥା ।

ଆଲୁଅ ନିଜେ ଗୋଟାଏ ବିଦ୍ରୋହର ଶୋଭାଯାତ୍ରା । ସେପରି ଆଲୁଅ ପଛରେ ଗୋଡ଼େଇବା ମଧ୍ୟ ଗୋଟିଏ ଢଙ୍ଗ-ବାଉଳା ବିଦ୍ରୋହ । ଆମର ଗୋଟାଏ ପ୍ରକାର ଅଭ୍ୟାସ ହୋଇଗଲାଣି ଆଲୁଅକୁ ଦେଖି ବିଭୋର ହୋଇଯିବା । ଉଷା ସୁନ୍ଦର, ସୂର୍ଯ୍ୟ ସୁନ୍ଦର, ଉଦ୍ଭିଦ, ମଣିଷ, ଫୁଲ, କଢ଼ ଏବଂ ମଣିଷ ଛୁଆ ଏ ସବୁ ସୁନ୍ଦର । ଦିନବେଳେ ମନଟାର ଫୁଲ-କଅଁଳି ଯେତେ ବଢ଼ିଯାଏ, ବିସ୍ତୃତ ହୋଇଯାଏ, ଆମକୁ ସେତେ ଦମ୍ଭ ଲାଗେ, ସେତେ ଖୁସି ଲାଗେ । ଆଲୋକ ପାଇଁ ଆମ ଭିତରେ ଅନେକ ଉତ୍କଣ୍ଠା । ଏଣେ କିନ୍ତୁ ଅନ୍ଧାରର ଆକର୍ଷଣ ଅନିବାର୍ଯ୍ୟ । ଅନ୍ୟ ଜନ୍ତୁ ଅପେକ୍ଷା ଆମେ ବେଶି ଦେଖୁ ବେଶି ବୁଝୁ । ଆମ ବୁଦ୍ଧିର ଫାଟକ ଅନେକ ପ୍ରଶସ୍ତ । ଏଣୁ ଆମ ଭିତରକୁ ଅନେକ ପରିମାଣରେ ଆଲୁଅର ଅନୁପ୍ରବେଶ ହୁଏ; ଉପନିବେଶ ସବୁ ପ୍ରତିଷ୍ଠିତ ହୁଏ । ଆମେ ଦୁଇଭାଗ ହୋଇଯାଉ । ଦୁଇଭାଗ ଛାଡ଼ ଶହେଭାଗ ହେଲେ ମଧ୍ୟ ଆପତ୍ତି ନ ଥିଲା; କିନ୍ତୁ ସେଇ ପରିମାଣରେ ଶଠତା ଆମ ଭିତରକୁ ପଶିଆସେ । ପଶିଆସେ ଦ୍ୱନ୍ଦ୍ୱ ଏବଂ ସଂଶୟ । ଆମେ ପ୍ରକୃତରେ ଆଲୁଅର ନା ଅନ୍ଧାରର, ଏ ବିଷୟରେ ସନ୍ଦେହ ଆସିଯାଏ । କଥିତ ଅଛି ଯେ ଜଣେ ଦାର୍ଶନିକ ଏକଦା ସ୍ୱପ୍ନ ଦେଖିଲେ, ସେ ଏକ ପ୍ରଜାପତି । ତା'ପରେ ତାଙ୍କର

Digitized by srujanika@gmail.com

ସମସ୍ୟା ହେଲା ଜାଣିବାକୁ ଯେ ସେ ପ୍ରଜାପତି ହୋଇ ମଣିଷ ହେବାର ସ୍ୱପ୍ନ ଦେଖୁଛନ୍ତି ନା ମଣିଷ ହୋଇ ପ୍ରଜାପତି ହେବାର ସ୍ୱପ୍ନ ଦେଖୁଛନ୍ତି । ସମାଧାନର ପନ୍ଥା ଖୋଜି ଖୋଜି ସେ ହୁଏତ ଚାଲିଯାଇଥିବେ । ଆମର ପ୍ରାୟ ସେଇ ସମସ୍ୟା । ଏ ଦୋଦୁଲ୍ୟମାନ ମୁହୂର୍ତ୍ତରେ ଆମେ କାହାର ? ଅନ୍ଧାରର ନା ଆଲୁଅର ? ପକ୍ଷେ ଆପୋଷବାଦୀ କହନ୍ତି ଆମେ ଉଭୟର । ଆଉପକ୍ଷେ ବିରକ୍ତ ହୋଇ କହନ୍ତି ଆମେ କାହାର ନୋହୁ । ଏମିତି ଟଣାଓଟରା ଭିତରେ କିନ୍ତୁ ସ୍ୱୀକାର କରିବାକୁ ପଡ଼େ ଯେ ଆମେ ଆଲୁଅରେ ଯାହା, ଅନ୍ଧାରରେ ତାହା ନୋହୁ ଏବଂ ଅନ୍ଧାରରେ ଯାହା ଆଲୁଅରେ ତାହା ନୋହୁ । ଆମେ ଗୋଟାକରେ ବଞ୍ଚୁ ଏବଂ ଅନ୍ୟଟିରେ ଅଭିନୟ କରୁ; କିନ୍ତୁ ଏତେ ତନ୍ମୟ ତଦ୍‌ଗତ ଭାବରେ ଅଭିନୟ କରୁ ଯେ ଏ ଅଭିନୟ ହିଁ ସତ୍ୟ ଏବଂ ବଞ୍ଚିବା ଏକ ଅଭିନୟ ବୋଲି ମନେ ହୁଏ ।

ଅନ୍ଧାର ସ୍ଥିର ସମୁଦ୍ର, ଯେପରି ଗୋଟାଏ ସ୍ଥିତି—ଅକଳନୀୟ, ନିଷ୍ପନ୍ଦ, ପ୍ରାଚୀନ । ଆଲୁଅ ଏକ ବିସ୍ଫୋରଣ, ଦୁର୍ଦ୍ଦମନୀୟ, ଛନ୍ଦମୟ, ଗତିଶୀଳ—ଏଣୁ ନୂତନ । ଅବିଚଳିତ ଅନ୍ଧକାର ହିଁ ପ୍ରକୃତିରୂପା କାଳରାତ୍ରି । ତା'ର ନିଷ୍ପନ୍ଦ ଜଠରରୁ ଗ୍ରହ, ଚନ୍ଦ୍ର, ତାରା, ଜୀବକୋଷର ଅଙ୍କୁର ପରି ଜନ୍ମ ହୁଅନ୍ତି; ଜନ୍ମ ହୁଅନ୍ତି ଏ ଉଦ୍ଭିଦ, ପଶୁ, ପକ୍ଷୀ ଏବଂ ମଣିଷ । ସେ ଆଦି ଜନୟିତ୍ରୀ ଜଗଦ୍ଧାତ୍ରୀ । ତା'ର କୋଳରେ ସତ୍ତା ସ୍ପନ୍ଦିତ ହୁଅନ୍ତି, ପ୍ରାଣ ସ୍ପନ୍ଦନ ହୁଏ, ଜୀବନର ଅଭିବୃଦ୍ଧି ହୁଏ, ଜୀବ ବହୁଗୁଣିତ ହୁଏ ! ... ସେ ଅଖିଳ ବ୍ରହ୍ମାଣ୍ଡର ଏକ ମାତ୍ର ଜାୟା ! —ତା'ର ନିଷ୍ପନ୍ଦ ଶୀତଳ ଜଠରରେ ସୂର୍ଯ୍ୟ ନିର୍ବାପିତ ହୁଏ, ସୃଷ୍ଟି ସମାହିତ ହୁଏ, ଗତି ସ୍ତମ୍ଭିତ ହୁଏ, ବିଳୟ ହୁଏ ଚେତନାର ସ୍ଫୁରଣ । ସେ କାଳରାତ୍ରି, ବିଶ୍ୱବ୍ରହ୍ମାଣ୍ଡର ଶୀତଳ, ସମାଧି-ଗର୍ଭ !

ଆଲୁଅ ଗୋଟିଏ ବିନ୍ଦୁ, ଗୋଟିଏ ରେଖା, ଗୋଟିଏ ପ୍ରବାହ । ସେ ଏକକୁ ବହୁଧା ବିଭକ୍ତ କରେ । ନିଜେ ଦିଶେ ନାହିଁ କିନ୍ତୁ ସମସ୍ତଙ୍କୁ ଦେଖାଏ । ଅନ୍ଧାର ଏକ ସ୍ଥିତି, ଏକ ସମାଧି । ତା'ଭିତରେ ସବୁ ପୁଣି ଏକୀଭୂତ ହୁଅନ୍ତି । ସେ ହିଁ ପ୍ରତ୍ୟୟ ଆଣି ଦିଏ 'ନେହ ନାନାସ୍ତି କିଞ୍ଚନ' ।—ସେ ସମସ୍ତଙ୍କୁ ଲୁଚେଇ ଦିଏ, ପ୍ରତ୍ୟେକଙ୍କୁ ଏକାକୀ କରିଦିଏ । ବାହାରର ସମସ୍ତ ଗ୍ରହ, ଚନ୍ଦ୍ର, ତାରା ଓ ପୃଥିବୀ ମନରାଜ୍ୟ ଭିତରକୁ ଚାଲି ଆସନ୍ତି । ଅନ୍ଧାରରେ ଆମେ ଜଗତକୁ ଧାରଣ କରୁ, ଏଣୁ ଆଲୁଅକୁ ମଧ୍ୟ ଧାରଣ କରୁ; କିନ୍ତୁ ଆମ ଭିତରେ ଗୋଟିଏ ଖୋଜ ଅଛି । ସେ ଆମକୁ ଏକାକୀ ରହିବାକୁ ଦିଏନାହିଁ । ଆମେ ଆଉ ଜଣକୁ ଖୋଜୁ । ସମସ୍ତ

Digitized by srujanika@gmail.com

ସବୁ ଅନ୍ଧାରରେ ବୁଡ଼ିଯାଏ, ବୁଡ଼ିଯିବାକୁ ସୁଖ ପାଏ; କାରଣ ତା'ର ଉପାଦାନ ହିଁ ଅନ୍ଧାର; କିନ୍ତୁ ଏଇ ଗୋଟିଏ ମାତ୍ର ଚଞ୍ଚଳ ବିନ୍ଦୁ ଆମ ଭିତରେ ବିଦ୍ରୋହ କରେ, ଉତ୍ତାପର ତେଜ ତୋଳେ ଏବଂ ସେଇ ବିନ୍ଦୁଟି ହିଁ ବୋଧହୁଏ ଆଲୋକର କେନ୍ଦ୍ର, ତାର ମୂଳ ନିବେଶ ! ଆମେ ଆଲୋକିତ ହେବୁ, ବନ୍ଧୁତା ବାନ୍ଧିବୁ, ସମର୍ପିତ ହେବାକୁ କାମନା କରୁ, ଏବଂ ଆଲୁଅରେ ହିଁ ଏ ବିସର୍ଜନ ସମ୍ଭବ । ଏଣୁ ବହୁରୂପୀ ସମଷ୍ଟିକୁ ଭଲ ପାଇବାକୁ ଯାଇ ଆଲୁଅର ପୃଷ୍ଠଭୂମିଟାକୁ ଭଲ ପାଇଯାଉ, ବ୍ୟକ୍ତିଟିକୁ ଭଲ ପାଇବାକୁ ଯାଇ ତା' ଘର, ବାଡ଼ି, ଆମ୍ବଗଛ ଆଦିକୁ ଭଲ ପାଇଲାପରି । ବୋଧହୁଏ ଏ ଭଲପାଇବା ହେତୁରୁ ହିଁ ବ୍ୟକ୍ତିଟି ବିସ୍ତୃତ ହୋଇ ପ୍ରତିଫଳିତ ହୁଏ । ପାଖ ଆଖ ବସ୍ତୁ ମଧ୍ୟ ତା'ର ଚୁମ୍ବକର ଟାଣ ପାଇ ନିଜେ ଟାଣନ୍ତି । ସେଇଭଳି ଆଲୁଅ । ସେଥିରେ ଆମେ ସଂସାରକୁ ଦେଖୁ, ସଂସାରକୁ ଭଲପାଉ ଏବଂ ସେଇ ସମୟରେ ଆଲୁଅକୁ ମଧ୍ୟ ଭଲ ପାଇଯାଉ !

ଆମେ ସୂର୍ଯ୍ୟବଂଶୀ ନୋହୁଁ, ଆଲୁଅ ଆମର ମୌଳିକ ଉପାଦାନ ନୁହେଁ । ଆମେ ଶରୀରର ଅନେକାଂଶ କେବଳ ଅନ୍ଧାର । ବାକି ଯେଉଁ 'ଏକ'ଟି ଆମେ ବୁଝି ପାରୁନାହୁଁ, ତାକୁ ମଧ୍ୟ ଆଲୁଅ କହିବା ସହଜ ନୁହେଁ । ଜନ୍ମରୁ ଜନ୍ମକୁ ଆମର ଅନିବାର୍ଯ୍ୟ ଗତି ଏବଂ ପରିଶେଷରେ ଏକାକାର ଅଭିନ୍ନ ଅନ୍ଧାର ହିଁ ଏକମାତ୍ର ସତ୍ୟ ।

Digitized by srujanika@gmail.com

# ଅଶ୍ରୁତ-ସ୍ୱର

ରାମଗିରି ଆଶ୍ରମର ଯକ୍ଷ ଆଦ୍ୟ ଆଷାଢ଼ରେ ମେଘଖଣ୍ଡକୁ ଦେଖି ଦୂତରୂପେ ଅଳକାପୁରକୁ ପଠାଇଦେଲେ ବୋଲି ସଂଖ୍ୟାଏ ଅଦ୍ୟାବଧି ନାକରେ ହାତ ଦେଇ ହସୁଛନ୍ତି । ସେମାନେ ହସନ୍ତୁ ଏବଂ ହସନ୍ତୁ ବୋଲି ସେମାନଙ୍କ ଉପରେ କାଳିଦାସ ମଧ୍ୟ ତାଙ୍କ ଯକ୍ଷଟିର ଏଭଳି ଅସ୍ୱାଭାବିକତା ପାଇଁ ଗୋଟାଏ ପ୍ରକାର ଓକିଲାତି କରିଛନ୍ତି । ପାଗଳ କିମ୍ବା ମଦ୍ୟପ ଯେପରି ସ୍ୱାଭାବିକ ବ୍ୟବହାର ପାଇଁ ବାଧ୍ୟ ନୁହନ୍ତି, କାମାର୍ତ୍ତ ମଧ୍ୟ ଜଡ଼ଚେତନ ବାରି ନ ପାରିବା କୁଆଡ଼େ ସେହିପରି ସୁନିର୍ଣ୍ଣୀତ । ଯେଉଁ ବସ୍ତୁର-ବୁଦ୍ଧି ବଳରେ ତର୍କ କରୁଥାଏ, ସେଇଟା ଯଦି ସବୁବେଳେ କ୍ଷୁରଧାର ପରି ଶୁଇଁ ଶୁଇଁ ହେଉଥିବ, ତେବେ ତ' କଥା ସେଇଠି ସରିଗଲା; କାରଣ କଳ୍ପନା ରହିବ ନାହିଁ, ଏଣୁ ଭୂତ ଭବିଷ୍ୟତ ମଧ୍ୟ ରହିବନାହିଁ । ସାହିତ୍ୟ, ଦର୍ଶନ ଏକେବାରେ ନାକଚ ଏବଂ ଧର୍ମଧାରଣା ସମ୍ପୂର୍ଣ୍ଣ ଅସମ୍ଭବ । ସେଇ ନାକଟେକା ପଣ୍ଡିତ-ବାଗୀଶଦଳ ରସମା ପିଣ୍ଡ କାବ୍ୟରୂପୀ କବିଟିକୁ ଓଲଟ ପାଲଟ କରି ଗଡ଼େଇଲେବେଳେ ଓଠ ଲେଉଟେଇ ଭ୍ରୁକୁଞ୍ଚେଇ ଟାକର ମାରନ୍ତି ଏବଂ ବିଚରା ଯଦି କୌଣସି ଗୋଟିଏ ମୁହୂର୍ତ୍ତରେ କେବେ ଚତୁର୍ଦ୍ଦଶୀର ଜହ୍ନ ଦେଖିଦେଇଛି, ତେବେ ତାକୁ ନିର୍ବିକାର, ଶୂଳରେ ଚଢ଼େଇ ଦିଅନ୍ତି । ତାଙ୍କ ପାଇଁ ମେଘ ସମ୍ପୂର୍ଣ୍ଣ ଜଡ଼; ହଂସ ବା ଭ୍ରମର କାଶୀରେ ସଂସ୍କୃତ ପଢ଼ି ନାହାନ୍ତି, ଏଣୁ ସେମାନଙ୍କୁ ଦୂତ କରିବା ଭଲ କିପରି ସମ୍ଭବ ? ଆହା ବିଚରା ! ଶୁଖିଲା କାଠଛେଲି ପରି ଏମାନଙ୍କ ଜୀବନରେ କେବେ ହେଲେ ଫୁଲ ଫୁଟେନାହିଁ । କେବଳ ଓଜ ଫଳିଲ ପରି ଗୁଡ଼ାଏ ଗୋଟାଳିଆ ଓଜନ ଓହଳି ଥାଏ । ସେଇଥିରେ ତାଙ୍କ ଡାଳ ଲଇଁ ରହେ ଏବଂ ତାକୁ ବଞ୍ଚିଜ କରି ସେମାନେ ବଞ୍ଚନ୍ତି ଓ ମରନ୍ତି । ଅଦ୍ଭୁତର ସନ୍ଧାନରେ ଆଚମ୍ବିତ ହେବାର ନମନୀୟତା ତାଙ୍କର ନାହିଁ । ଏ ଶୁଷ୍କଂ କାଷ୍ଠଂ ମହାଶୟମାନେ ଗୋଟିଏ ଗୋଟିଏ ଦୁଷ୍ଟଗ୍ରହ । ସେମାନଙ୍କୁ କିଛି ବନଭୋଜ୍ୟ ଦେଇ ଆଲେଡ଼ଇ ଆସନ୍ତୁ । ସେମାନଙ୍କ ପାଇଁ ନିଷିଦ୍ଧ ଅଞ୍ଚଳର ବଣାଭୋଜ ଭିତରକୁ ଆପଣଙ୍କୁ ନିମନ୍ତ୍ରଣ ରହିଲା ।

Digitized by srujanika@gmail.com

ଆପଣଙ୍କୁ ହାତଧରି ଯେଉଁ ପାଦୁଇଟି ନେଇଯିବେ, ସେ ହୁଏତ ସଦାଚଞ୍ଚଳ ଚତୁର ପିଲ୍‌ପଲଟିଏ । ସେ ଆପଣଙ୍କ ଆଗରେ ନାଚି ନାଚି ରୂପାର ଝରଣାପରି ଝରିଯିବ ସେ ହୁଏତ ପୂର୍ଣ୍ଣିମୀର ପାହାନ୍ତ । ଆପଣ ସମସ୍ତଙ୍କୁ ଜାଣନ୍ତି; କିନ୍ତୁ ଚିହ୍ନନ୍ତ ନାହିଁ । ଦୋଷ ଆପଣଙ୍କର ନୁହେଁ । ଯାହାର ଦୋଷ ଆପଣ ତାଙ୍କୁ ପାଠକ ପାଖରେ ଛାଡ଼ିଦେଇ ଆସିଛନ୍ତି ।

ଜହ୍ନକୁ ମାମୁଁ ବୋଲି ଡାକିବା ବୟସରେ ଆପଣ ବେଳେବେଳେ ଧରିଥିବା ପ୍ରଜାପତିଟିକୁ ଛାଡ଼ି ଦେଇଛନ୍ତି, ନ ହେଲେ ତା' ମା' କୁଆଡ଼େ କାନ୍ଦିଥାନ୍ତା । ବୁଢ଼ୀଶାଳୀକୁ ଗଳ୍ପବାଟରେ ବସ୍ତାଏ ଚାଉଳ ଥୋଇ ଦେଇ ବଟ ଓହଳରେ ଘଡ଼ିଏ ଦୋଳି ଖେଳିଛନ୍ତି, ନ ହେଲେ ବଟଗଛ ମନ ଦୁଃଖ କରିଦେଇଥାନ୍ତା । ଖୁବ୍ ନରମ ସେ ବୟସର ସ୍ୱପ୍ନ । ସରଳ ସ୍ନିଗ୍ଧ ଗୋଟିଏ ଚନ୍ଦ୍ରବିମ୍ବିତ କୁଅର ସୃଷ୍ଟି ସାଙ୍ଗ ଛଳ ଛଳ ହେଉଥାଏ ସେ ବୟସରେ; କିନ୍ତୁ ବୟସ ବଢ଼ି ଆସିଲେ କୁଅର ଘୁଞ୍ଚିଯାଏ ଏବଂ କାନ୍ଥ ଦୁଆରାଭିତରେ ବେଢ଼ିତ ହୋଇ କଥାଣି କଅଣ ହୋଇଯାନ୍ତି, ଜଡ଼, ଚେତନ, ଉଦ୍ଭିଦ, ପଶୁ ପକ୍ଷୀ ଓ ମଣିଷ । ସେ ବୟସଟାରେ ବୋଧହୁଏ ଖୁବ୍ ଧନ୍ଦାରେ ନିଜକଥା ଅନ୍ୟ ଉପରେ ଆରୋପ କରିଦେଇ ହୁଏ; ସେ ବଟଗଛ ହେଉ ବା ପ୍ରଜାପତି ହେଉ; କିନ୍ତୁ କଥାଟାକୁ ଆଉ ଟିକିଏ ତଳେଇ ଦେଖିଲେ ଜଣାଯାଉଛି ଯେ ଆମେ ମୁଣ୍ଡବାଳ ପାଚିଲା ପର୍ଯ୍ୟନ୍ତ ଏ ବାଲ୍ୟାବସ୍ଥାରେହିଁ ରହିଥାଉ । ନହେଲେ କିଏ କାଠ ପଥରକୁ ଚନ୍ଦନ ସିନ୍ଦୂର ଦେଇ ଦେଉଳରେ ଝୁଲଉ ଥାଆନ୍ତେ ? ଅନେ ସୁଖ ପାଉଥିବା ବିବିଧ ପିଠାପଣା ଭୋଗ ଲଗାଇ ଉନ୍ମତ୍ତପରି କୀର୍ତ୍ତନ କରୁଥାନ୍ତେ ? ଆଜୀବନ ଆମେ ବାଳୁତ ହୋଇ ରହିଯାଉ । ଆମ ସ୍ୱପ୍ନଭୂମି ବଦଳିଯାଏ, କିନ୍ତୁ ନିଶା କଟେନାହିଁ ।

ଭାଗ୍ୟକୁ ନିଶା କଟେନାହିଁ ବୋଲି ମେଘଦୂତ ରଚନା ହୁଏ, ବାରମ୍ବାର ଜଡ଼ଚେତନାର ବ୍ୟବଧାନ ଭେଦି ଏକାକାର କରିବାର ଉତ୍ସୁକତା ଜାଗି ରହେ । ବୟସ ବୃଦ୍ଧିକୁ ଅସ୍ୱୀକାର କରୁଥିବା ତା'ର ମୋଟା ଚଷମାକୁ ଖଟତଳେ ଲୁଚାଇ ଦେଇଥିବା ଚପଳମତି ବାଳକର ଅଜସ୍ର ଜୟ ହେଉ ! ମୋଟ ଉପରେ ମାନବ କଳ୍ପନାର ଜୟ ହେଉ । — ଯାହା କେବେ କୌଣସି ଶୃଙ୍ଖଳାକୁ ସ୍ୱୀକାର କରେନାହିଁ, ପୁରୁଣାରେ ନୂଆକୁ ସୃଷ୍ଟି କରୁଛି; ନୂଆରେ ପୁରୁଣାକୁ ପୁନର୍ଜୀବିତ କରୁଛି; ତା'ର ଚିର ପ୍ରବହମାନ ଧାରାରେ ଅହରହ ଇନ୍ଦ୍ରଧନୁର ରଙ୍ଗ ଫୁଟେଇ ଚାଲିଛି । ସେ ଜଙ୍ଗଲରେ ଜୀବନଯାପନ କରେ, ଅଚଳକୁ ସ୍ପନ୍ଦିତ କରେ; ମିଥ୍ୟାମାଖି, ନାଚାନ୍

Digitized by srujanika@gmail.com

ଚେତନାରେ ନୂତନ ସ୍ଫୁରଣ ଯୋଗାଇ ଦିଏ । କଳ୍ପନାର ଇନ୍ଦ୍ରଜାଲରେ ସର୍ଜନା କରିଚାଲିଥିବା ସ୍ରଷ୍ଟା ସ୍ୱପ୍ନ-ଜଗତର ନୁହେଁ, ସେ ଆଜି ଏକ ଘନିଷ୍ଠ ପର୍ଯ୍ୟାୟରେ ମର୍ତ୍ତ୍ୟ-ଜଗତର । କୌଣସି ନୀରବ ନିଶାର୍ଦ୍ଧ ଭିତରେ ଭାବୁଭାବୁ ସ୍ୱର ବିସ୍ତାରଣ ଘଟିଲେ ସେ ହିଁ ସାଗର ଗର୍ଭରେ ନିଜର ଅଦ୍ଭୁତ ଅଗ୍ନ୍ୟୁଦ୍ଭବ ଦେଖିପାରିବେ । ହୁଏତ ସେଇଟା ତା'ନିଜର ପ୍ରତିବିମ୍ବ; କିନ୍ତୁ ତା'ବୋଲି ଅଗ୍ନେୟଗିରି ଜନ୍ମା ସାଗର ପରି ବସ୍ତୁ ତୁଳନାରେ ତାହା ଯେ କମ୍ ସତ, ଏକଥା କିଏ କହିହେବ ? ବରଂ ଇନ୍ଦ୍ରିୟର ସଂଘାତରେ ଏ ଆଚମ୍ବିତ ସୃଷ୍ଟି ଅନ୍ୟ ଯେ କୌଣସି ବସ୍ତୁ ପ୍ରବାହପରି ସତ । ସ୍ଥୂଳ ଇନ୍ଦ୍ରିୟର ବଳୟଭିତରେ ମୋଟା ମୋଟି ଭାବରେ ଅନେକ ରହିଯାଉ । ବସ୍ତୁଖଣ୍ଡିକୁ ବେଢ଼ିଥିବା ଆଲୋକ ଶିଖର ପରପାରରେ ଅଦ୍ଭୁତ ସୃଷ୍ଟି ଆମର ଆଗୋଚରେ ରହିଯାଏ । ଅତୀନ୍ଦ୍ରିୟ ଜଗତ ଅପରିଚିତ ରହିଯାଏ । ପରିଚିତ ପରିଧିକୁ ସ୍ପର୍ଶକରି ତା' ଉପରକୁ ଅଦୃଶ୍ୟ ଶୀତଳ ସ୍ୱପ୍ନପରି ସଞ୍ଚରି ଆସୁଥିବା 'ଅପରିଚିତ'ହିଁ ନିତ୍ୟ-ପ୍ରବୃତ୍ତ-ବର୍ତ୍ତମାନ । ସାମାନ୍ୟ ମାତ୍ର ଦୃଷ୍ଟିର ଅଦଳ ବଦଳ ହୋଇଗଲେ ଏ ରାଜ୍ୟରୁ ସେ ରାଜ୍ୟକୁ ପହଁଚି ଯାଇହୁଏ ।

କୌଣସି ଆର୍ଦ୍ର ନିର୍ଜନ ଅପରାହ୍ଣରେ ନୀରବ ଡାକବଙ୍ଗଳାରେ ବସି ଆପଣ ଯେ ଗଛଗୁଡ଼ିକୁ ନିଶ୍ଚୟ ଦେଖିଥିବେ । ପ୍ରତ୍ୟେକଟିର ଠାଣି ଅଲଗା, ଶାଖା ପତ୍ର ଡାଳ ସବୁ ଅଲଗା । ପବନ ବାଜିଲେ ଚହଲିଯିବା ଭଙ୍ଗୀ, ନ ବାଜିଲେ ଗୁମ୍ ମାରି ଠିଆ ରହିବାର ଢଙ୍ଗ, ଜଣକଠାରୁ ଆଉ ଜଣକର ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ପ୍ରତ୍ୟେକର ଗୋଟିଏ ଲେଖାଁ ବ୍ୟକ୍ତିତ୍ୱ, କାହା ସାଙ୍ଗରେ ନ ମିଶିଲା ଭଳି, ସମସ୍ତଙ୍କଠାରୁ ବାରି ହୋଇଗଲା ଭଳି । କିଏ ଜଣେ, ହେଇ ବୋଧହୁଏ ନିଦରୁ ଉଠି ବହୁତୋଳି ଅଳସ ଭାଙ୍ଗୁଛି; ଗୁଡ଼ାଏ ନରମ ହାଲୁକା ବାଳ ମୁହଁରେ ବୁକୁରେ ଛଟେଇ ହୋଇଯାଇଛି ! କିଏ ଜଣେ ଲାଜରେ ଜଡ଼ସଡ଼ ହୋଇ ଠିଆହେଇଛନ୍ତି । ଦୁଇଟି କଞ୍ଚା ଲଇ ପରି ସଙ୍କୁଚିତ ବାହୁ ତା'ର ସଦ୍ୟସ୍ନାତ ଲାବଣ୍ୟକୁ ଘୋଡ଼େଇ ପାରୁନାହିଁ; ଆଖି ଟେକି ସେ ଅନେଇ ପାରୁନାହିଁ ମେଘବଳୟିତ ଶ୍ରାବଣର କଦମ୍ବକୁ;— ନୂପୁର-ରେଖା ଉପର ଦେଇ ଯମୁନା ବୋହିଯାଉଛି— । ତେଜ ଜର ଜର ବଳିଷ୍ଠ ସ୍ତମ୍ଭ ପରି ଆଉ କାହାକୁ ଦେଖି ମନେହୁଏ କହିବାକୁ 'ପୁରୁଷପୁଙ୍ଗବ ଦେହି ଦାସ୍ୟଂ' ତା' ଭିତରୁ କିଏ ହୁଏତ ପାଚିଲା ଭୁରୁ ଟେକି ମିଟିମିଟି ଅନାଇ ମୁରୁକି ମାରେ; ତା' ଚନ୍ଦାମୁଣ୍ଡରେ ଦୁଇ ତିନି କେରା ଝୋଟ ପରି ଅଲରା ବାଳ । ତା'ର ଶାଖାଗୁଡ଼ିକ କେବେଠୁଁ ଝଡ଼ିଗଲେଣି, ଶୁଖିଗଲଣି ପତ୍ରର ସମ୍ଭାର । ଗଣ୍ଠି ମାଟି-

Digitized by srujanika@gmail.com

ଖାଇ ଝରର ଫିଟିଗଲଣି । ଦାନ୍ତ ନ ଥିବା ପାକୁଆ ପାଟି ମେଲେଇ ତଥାପି ସେ ମଇଁଷିପଣିଆଁ ପ୍ରକାଶ କରେ । କିଏ ଝଲସି ପୁଚ୍ଛ ଫୁଟି ଦେଇ ଚଢ଼ିଟି ଆସୁଥିବା ମୟୂର ପରି, ଫଣା ଟେକି ପଦ୍ମଡାଳରେ ଝୁଲୁଥିବା ଚମ୍ପାନାଗ ପରି ।

ଚମତ୍କାର୍ଯ୍ୟରେ ଏଗୁଡ଼ିକ ଉଦ୍ଭଟ ! ଅଳଂକାରରେ ରୂପକ ବା ଉତ୍ପ୍ରେକ୍ଷା । କେବଳ ବାଗ୍‌ବିଳାସ—ଦାୟିତ୍ୱହୀନ ଲଗାମ ଛଡ଼ା କଳ୍ପନାର ମିଥ୍ୟାଗ୍ରହ । ଗଛଗୁଡ଼ାକ କାହିଁକି ମଣିଷ ଭଳି ବା ପଶୁପକ୍ଷୀ ଭଳି ଦିଶିବେ ? ଦିଶିବାରେ ସେମାନଙ୍କର ଆୟତ୍ତ ନାହିଁ । କେବଳ ଦେଖୁଥିବା ଆଖିରେ କେମିତି କାଚ ଲଗିଛି ତା'ରି ଉପରେ ସେମାନଙ୍କର ରୂପ ଓ ରଙ୍ଗ ବଦଳି ଯାଏ । ଏଥିରେ ସତ୍ୟତା ନାହିଁ; ଅଛି କେବଳ ଦର୍ଶକର ପ୍ରତି ମୁହୂର୍ତ୍ତରେ ବଦଳୁଥିବା ଖିଆଲି ରୁଚି । ସେଇ ଗଛ ହୁଏତ' ଦାନ୍ତ କଡ଼ମଡ଼ କରି ଆଖି ତରାଟି ମାଡ଼ିଆସିଲା ପରି ଦିଶିପାରେ । ବାଘ ହୋଇ ଗର୍ଜି ଉଠିଲାପରି ବୋଧ ହୋଇପାରେ । ଅତି ବିକଟାଳ ଓ ଭୟଙ୍କର ଦିଶିପାରେ । ଅତଏବ ଦିଶିବା ଗୋଟାଏ ବ୍ୟକ୍ତିଗତ ବିମ୍ୱରେଖା । ସେଥିରେ କି ପ୍ରକାର ବା ସତ୍ୟ ଥାଇପାରେ ? କୌଣସି ଗୋଟାଏ ମୁହୂର୍ତ୍ତରେ ମଣିଷ ଏବଂ ଗଛ ପରସ୍ପରକୁ ସ୍ପର୍ଶକରୁଥିବା ହେତୁ ହୁଏତ ଦର୍ଶକ-ଉକ୍ତି ଦାୟିତ୍ୱ ହୋଇଯାଏ ଏବଂ ଗଛ ହୋଇଯାଏ ମାନବାୟିତ । ଗୋଟିକରେ ଆରଟିର ନିବିଡ଼ ପ୍ରତିଫଳନ ହୁଏ ବୋଲି ଏଭଳି ଭ୍ରମ ହେବା ସ୍ୱାଭାବିକ । ଖୁବ୍ ସମ୍ଭବ ଏହା ହିଁ ହୁଏ; କିନ୍ତୁ ସବୁବେଳେ କ'ଣ ତାହା ହୁଏ ନା ସମସ୍ତଙ୍କ ପାଇଁ ହୁଏ ? କୌଣସି ବିଶିଷ୍ଟ ପରିବେଶ ଭିତରେ ଅନେକ ଆବରଣ ତଳେ ଖୁବ୍ ଗମ୍ଭୀରରେ ଏ ପ୍ରକାର ନିବିଡ଼ ଅନୁଭବଟିଏ ଆସେ ଏବଂ ଏଇଟା ଗୋଟାଏ ପ୍ରକାର ସ୍ନିଗ୍ଧ ଶୀତଳ ଆପଣାପଣର ଅନୁଭବ; ଭଲ ପାଇବାର ଅଦ୍ଭୁତ ଅନୁଭବ ।

ଗଛଟିଏ ଆଉ କାହାଭଳି ନ ଦିଶି କେବଳ ଗଛପରି ଦିଶିଲେ ମଧ୍ୟ ଭାରି ଚମତ୍କାର ଦିଶିପାରେ । ଖାଲି ତାକୁ ଠିକ୍‌ରୂପେ ନିଘା ଜମେଇ ଦେଖି ଜାଣିଲେ ହେଲା । କିନ୍ତୁ ସମସ୍ତ ଧରି ଆମେ କେବଳ ନିଜକୁ ହିଁ ସବୁଠି ଦେଖିଥାଉ । ଆମ ରୁଚି, ଆମ ସାଙ୍ଗେ ମେଳ ଖାଉଥିବା, ବାରପଣରୁ ଷୋଳପଣ ମିଶି ଯାଉଥିବା ରଙ୍ଗ ରୂପରେ ଆତ୍ମୀୟତା ଅନୁଭବ କରୁଥାଉ । ଗଛଟିକୁ ବାରମ୍ବାର ଯେତେବାଗେ ଅନାଇଲେ ମଧ୍ୟ ତା'ର ନୂଆ ରୂପ, ନୂଆ ଛନ୍ଦ ଆମକୁ ମୁଗ୍ଧ କରେ । ଧନିଷ୍ଠବ୍ୟକ୍ତି ଯେପରି ବହୁ ସହସ୍ର କମନୀୟତାର ପାଖୁଡ଼ା ମେଲି

Digitized by srujanika@gmail.com

ଜୀବନକୁ ମଧୁସ୍ନାତ କରୁଥାଏ, ତଥାପି ତାର ଅସଲ କେନ୍ଦ୍ରଟିକୁ ଛୁଇଁ ହୁଏନାହିଁ, ଚାହିଁ ହୁଏନାହିଁ ସେ ଅତି ପରିଶାନ୍ତ ବନ୍ଧୁଟିକୁ ଯେପରି ଏ ଗଛଟି ଶାଖା, ପ୍ରଶାଖା, ପତ୍ରପୁଷ୍ପର ଗୋଟିଏ ମୁହୂର୍ତ୍ତରୁ ମୁହୂର୍ତ୍ତକୁ ସେ ବଦଳି ଚାଲିଥାଏ । ଦଶ ଦିଗରୁ ବଦଳି ଚାଲିଥାଏ । କୌଣସି ଗୋଟିଏ ମୁହୂର୍ତ୍ତରେ ସମଗ୍ର ଗଛଟିକୁ ଦେଖିବା ସମ୍ଭବ ନୁହେଁ । ଏଣୁ ଫାଟଲ ଯୋଗୁଁଏ ନେଇ ଯାହା କିଛୁ ସମ୍ପର୍କ ହୋଇଗଲା, କେବଳ ସେତିକ । ଏ ଅଫୁରନ୍ତ ପ୍ରୟାସରେ ହଠାତ୍ କ୍ଲାନ୍ତ ଲାଗେ ଏବଂ ଯେଉଁ ରୂପ, ରଙ୍ଗ ଓ ଛନ୍ଦରେ ସେ ଜଡ଼େଇ ରଖିଥିଲା ହଠାତ୍ ସେ ସବୁ ଜଣାପଡ଼େ—ସେଇ ପରିମାଣରେ ନିଜର ଆଖି, ନାକ, କାନର ଧରିବାର ବସ୍ତୁ-କିୟା ଜଣାପଡ଼େ ଅତି ବାହାରିଆ, ଅତି ସାଧାରଣ, ଉପରେ ଉପରେ କେବଳ ଗୋଟିଏ ପ୍ରକାର ଭାବଦୋଳି ପରି । ସବୁ ରୂପ ରଙ୍ଗ ଛନ୍ଦ ଆଡ଼େଇ ଦେଲାପରି ଯେଉଁ ଅବଶେଷଟି ରହିଯାଏ ଏବଂ ଦେଖି ଶୁଣି ଛୁଇଁବାର ବାହ୍ୟ ଆଚରଣ ପଶ୍ଚାତ୍‌ରେ ଦର୍ଶକର ଯେଉଁ ଅବଶେଷାଂଶ ଲୁଚିଥାଏ, ସେ ଦୁହେଁ ହଠାତ୍ ଦିନେ ମୁହାଁମୁହିଁ ହୋଇଯାନ୍ତି । ଘନ ଅନ୍ଧାର ଏବଂ ନୀରବତା ଭିତରେ ବିଜୁଳି ଚମକିଲାପରି ଗୋଟାଏ ଆଚମ୍ବିତ ସମ୍ପର୍କ ହୋଇଯାଏ, କବୀନ୍ଦ୍ର ବନସ୍ପତି ସେଠି କଥା କହେ । ସମସ୍ୱରରେ ଦୁହେଁ ଗୋଟିଏ ଛନ୍ଦରେ ଗୋଟିଏ ମାତ୍ର ସଙ୍ଗୀତ ଗାଇଉଠନ୍ତି । ତେଣିକି ଗଛରୁ ପୁରୁଣା ବକଳା ଝାଡ଼ିଦେଇ ତାକୁ କୁଣ୍ଢେଇବା ସହଜ, ତା' ପତ୍ରରେ ପତ୍ରରେ ଲହଡ଼ି ମାରୁଥିବା ଆତ୍ମୀୟତାକୁ ଅନୁଭବ କରିବା ସହଜ, ତା' ମୂଳରେ ପାଣିଢାଳି ନିଜର ତୃଷା ମେଣ୍ଟେଇବା କିମ୍ବା ତା'ର ସବୁଜ ଚୂଡ଼ା ଉପରେ ହିମବର୍ଷା କରି ନିଜେ ଆର୍ଦ୍ର ଶୀତଳ ହେବା ସହଜ । ଏଣୁ ଜଣେ ମୟୂର ପରି ନାଚି ଉଠିଲେ ଆଉ ଜଣକ ନବଜଳଦ ରୂପରେ ପ୍ରେମ ରକ୍ଷା କରିବାକୁ ବାଧ । ଏଭଳି ନୂଆ ନୂଆ ରୂପ ସବୁ ସେଇ ମୌଳିକ ସମ୍ପର୍କ ଓ ଛନ୍ଦର ହିଁ ବିଭିନ୍ନ ସ୍ୱର ।

ଥରେ ଏପରି ନିବିଡ଼ ସଂପର୍କ ବସ୍ତୁ ବା ବ୍ୟକ୍ତି ସହିତ ସ୍ଥାପିତ ହୋଇଗଲେ, ସମଗ୍ର ଜଗତରେ ସେଇ ଗୋଟିଏ ମାତ୍ର ଛନ୍ଦ ଅନୁଭବ ହୋଇପାରେ । ଜଡ଼ ଚେତନ ଏକାକାର ହୋଇଯାଇ ପାରେ । ଚେତନାର କେନ୍ଦ୍ରବିନ୍ଦୁରେ ସଂବଦ୍ଧ ସଂବେଦନଶୀଳତାରେ ସର୍ବଭୂତରେ ପ୍ରସାରିତ ହୋଇ ଅଦ୍ଭୁତ ପ୍ରେମାନନ୍ଦର ଆସ୍ୱାଦନ କରିପାରେ । ତେଣିକି ସେ ଯଦି ଆବର୍ତ୍ତକ ବା ପୁଷ୍କର ମେଘକୁ ଭାଇ ବୋଲି ସଂବୋଧନ କଲା, ତାହା ଖୁବ୍ ସ୍ୱାଭାବିକ୍ ଏବଂ ଯଦି ପାହାଡ଼ ବା ପାଦପକୁ

Digitized by srujanika@gmail.com

ଚଳନ୍ତା ପ୍ରବାହ ରୂପେ ଦେଖିଲ, ସେଥିରେ ମଧ ଅସୁବିଧା କିଛି ନାହିଁ । ପ୍ରେମର ପୃଷ୍ଠଭୂମିରେ ସମଗ୍ର ବସ୍ତୁସଂଘ ମୁକୁରବତ୍ କେବଳ ଗୋଟିଏ ସତ୍ୟ ରୂପକୁ ବିମ୍ବିତ କରିବା ସ୍ୱାଭାବିକ ।

ଏ ସ୍ୱରର ଭାଷା ନାହିଁ, ଶବ୍ଦସ୍ପର୍ଶାଦି ଅନନ୍ତ କୋଳାହଳର ବହୁଳତା ନାହିଁ । ଆପଣ ଏ ସ୍ୱରଟିକୁ ସମ୍ପୂର୍ଣ୍ଣ କଳ୍ପନାର ଅଳୀକ ରଚନା ବୋଲି ହସି ଉଡ଼େଇ ଦେବାର ଅଭ୍ୟାସ କରିଛନ୍ତି । ପଥର ସାଙ୍ଗରେ କେହି ଭାବଦୋସ୍ତି କଲେ ଆପଣ ପଣ୍ଡିତପଣିଆରେ ସେଇ ନିର୍ବୋଧ ଆଦିମ ଶିଶୁଗୁଡ଼ିକୁ ଉପହାସ କରନ୍ତି । ପ୍ରଚଣ୍ଡ ଖରାରେ ଶିଖ ମଉଳାଇ ଝାଉଁଳି ପଡ଼ିଥିବା ବୃଦାଟିର ବ୍ୟଥାରେ ଆତୁର ହେଲେ ଆପଣ ବୁଝିପାରନ୍ତି ନାହିଁ । କଳାଧଳାର ଦୁରନ୍ତ ବ୍ୟବଧାନକୁ ବେଖାତିର କରି, ବିଭିନ୍ନ ମାନବୀ ଭାଷାର ଗିରିକାନ୍ତାର ଉଲ୍ଲଂଘନ କରି, ମଣିଷ ଛୁଆର ଅପରିମେୟ ଯାତନାକୁ ଏଇ ସାର୍ବଜନୀନ ସ୍ୱରରେ ତର୍ଜମା କରିଦେଲେ, ଆପଣ ଅସନ୍ତୁଷ୍ଟ ହୁଅନ୍ତି ! ଏଥିରେ କୋରାଣ୍ ବା ବାଇବେଲ୍‌ର ପବିତ୍ର ଶବ୍ଦ ନ ଥିବାରୁ ଆପଣ ହତାଶ ହୁଅନ୍ତି ! ଆପଣ ଏତେ ସବୁ ନ କରି ବରଂ କେବଳ ଥରେ ନିଜର ବୃତ୍ତି ନିରୋଧ କରି କାନେଇବାକୁ ଚେଷ୍ଟା କରନ୍ତୁ । ତା' ପରେ ଆପଣଙ୍କର ଅନୁଭବକୁ ସ୍ୱର୍ଗର ଅଗ୍ନିକଣା ପରି ଆପଣ ନିଜେ ବିତରଣ କରିବେ ! ଆମ ଭିତରୁ ଜଣେ ଶରବିଦ୍ଧ କୌଞ୍ଚର ବେଦନା ପାଇଁ ଶୋକ କରିଥିଲେ । ଆଉ ଅନେକେ ହୁଏତ ଭାଷାହୀନ ମୂର୍ଚ୍ଛନାରେ ସମଗ୍ର ପ୍ରାଣିଜଗତକୁ ବେଣୁବୀଣାର ମଧୁର ସ୍ୱରରୂପରେ ମୁଗ୍ଧ କରିଛନ୍ତି । ଏ କଳ୍ପନାପାୟୀ ଗୋଷ୍ଠୀ କିନ୍ତୁ ସେ ମୌଳିକ ସ୍ୱର ଶୁଣି ଶୁଣି ନାହାନ୍ତି । କାରଣ ତା'ର ପ୍ରଥମ ଲକ୍ଷଣ ସ୍ତବ୍ଧତା, ଘନ—ପ୍ରଶାନ୍ତ ନୀରବତା । ତାକୁ ଥରେ ଶୁଣିଲେ ତଲ୍ଲୀନ ହୋଇଯିବା କଥା । ସେଠି ପହଞ୍ଚିଗଲେ ଏ ରାଜ୍ୟରୁ ଫେରିବାର ପ୍ରଶ୍ନ ନାହିଁ, ବିଭିନ୍ନ ମାଧ୍ୟମରେ ତାକୁ ପ୍ରକାଶ କରିବାର ଅବକାଶ ନାହିଁ ।

ଏଣୁ ଆପଣ ବାଛନ୍ତୁ । ଆଗରୁ କିନ୍ତୁ କହି ରଖୁଛି ଯେ ଏ ପନ୍ଥା ସହଜ ନୁହେଁ 'ଦୁର୍ଗଂ ପଥଂ ତତ୍ କବୟୋ ବଦନ୍ତି !' ଆପଣ ଏ ଅଦ୍ଭୁତ ରାଜ୍ୟକୁ ଆସିଲେ ଜଗତର ଉପର ଆବରଣ ଖସିପଡ଼ିବ; ଯାହା ଉପରେ ସାଧାରଣତଃ ଆପଣଙ୍କର ସମସ୍ତ ମୂଲ୍ୟବୋଧ ଖଞ୍ଜି ହୋଇ ରହିଛି । ସେ ତୀବ୍ର ଅନୁଭବ ସହି ପାରିବେ ତ ? ନ ହେଲେ ଏବେ ମଧ ସମୟ ଅଛି । ଦୁଆରେ ଅପେକ୍ଷା କରି ରହିଛନ୍ତି ଆପଣଙ୍କର ମୋଟା ଚଷମା ପରିହିତ ପଣ୍ଡିତ ବନ୍ଧୁ । ଆପଣ ଫେରିଯାଆନ୍ତୁ

Digitized by srujanika@gmail.com

ଘ୍ରାପାକାଗଜ ଏବଂ ତାଳପତ୍ରର ବନ୍ଧୁ ଭାଷା ଓ ଭାବର ପରିଚିତ ରାଜ୍ୟକୁ । ସେଠି ଚନ୍ଦ୍ର ଏକ ପରିକଳ୍ପିତ ଜଡ଼ପିଣ୍ଡ; ଉଦ୍ଭିଦ ପଶୁପକ୍ଷୀ ତାଙ୍କର ଗାଣିତିକ ସୀମାରେଖା ଭିତରେ ପରସ୍ପରଠାରୁ ବିଚ୍ଛିନ୍ନ । ଏକାକାର ହୋଇଯିବାର ଗୋଳମାଳ ସେଠି ଆଦୌ ନାହିଁ । ଅଶ୍ରୁତ ସ୍ୱରର ସଂଘାତ ଆପଣଙ୍କୁ କକ୍ଷଚ୍ୟୁତ କରିବାର ଆଶଙ୍କା ନାହିଁ । ସେଠି କିନ୍ତୁ ଦିନେ ନା ଦିନେ କ୍ଳାନ୍ତ ବୋଧ କରି ଆପଣ ଫେରି ଆସିବାକୁ ଚାହିଁବେ । ଏ ଦ୍ୱାର ସବୁବେଳେ ଉନ୍ମୁକ୍ତ ରହିଲା ଏବଂ ଆପଣଙ୍କୁ ନିମନ୍ତ୍ରଣ ରହିଲା, ନିଶ୍ଚୟ ଆସିବେ ।

---

Digitized by srujanika@gmail.com

# ମହାଜନ ପନ୍ଥା

ଟୋକେଇଏ ବାଇଗଣ ଭିତରୁ କୌଣସିଟିକୁ ସର୍ବଶ୍ରେଷ୍ଠ ବିଚାର କରି ନିଃସନ୍ଦେହ ବାଛିନେବା ଯେତେ ସହଜ ବୋଲି ମନେ ହେଉଥିଲେ ସୁଦ୍ଧା ତା' ଆଦୌ ସହଜ ନୁହେଁ । ଘଣ୍ଟା ଘଣ୍ଟା ଧରି କଚେଇ କଚେଇ ବାଛିବା ପରେ ମଧ୍ୟ, ମନ ପରିଷ୍କାର ହୋଇପାରେ ନାହିଁ । ଅନୁଭବ ହୁଏ ଯେପରି କି ସବୁଠାରୁ ଭଲ ବାଇଗଣଟି ସେଇ ଟୋକେଇରେ ହିଁ ରହିଗଲା । ପୁଣି ନଇଁପଡ଼ି ଟୋକେଇଯାକ ବାଇଗଣ ଓଲଟ ପାଲଟ କରି ପରୀକ୍ଷା ଚାଲେ । ଗୋଟିକୁ ହାତରେ ଧରିବା ମାତ୍ରେ ଆଉ ଗୋଟିଏ ତା'ଠାରୁ ଭଲ ପରି ଦିଶେ । ସେଇଟି ଧରିଲେ ପୁଣି ଗୋଟିଏ ଦେଖାଯାଏ ତା'ଠାରୁ ଭଲ । ଶେଷରେ ବାଇଗଣ ତ' ବାଛି ହୁଏନାହିଁ; ବେପାରୀ ନିକଟରୁ ଦଣ୍ଡା ଟେକ ଘଉଡ଼ା ହୁଏ ! ଅସନ୍ତୁଷ୍ଟ ଗରାଖ ଭାବେ—"ଏଥରକ ନ ହେଲା ନାହିଁ, ଆର ପାଳିକୁ ଦେଖିବା !" ଆର ପାଳି ଆସେ କି ନାହିଁ, ଆସିଲେ ସେ ଆସେ କି ନାହିଁ, ସେ ଆସିଲେ ମଧ୍ୟ ବାଇଗଣ ଆସେ କି ନାହିଁ—ଏ ପ୍ରଶ୍ନଗୁଡ଼ିକର ଆଉ ଏକ ପ୍ରସଙ୍ଗ ।

ସମସ୍ତେ କିନ୍ତୁ ଏଭଳି ତଡ଼ା ଖାଆନ୍ତି ନାହିଁ । କେତେ ଗରାଖ ଆସିବା ମାତ୍ରେ ଖପ୍ କିନା ଟୋକେଇରୁ ଗୋଟାଏ ଟେକି ନିଅନ୍ତି । ତାଙ୍କୁ ବେଳ ନଥାଏ; କିନ୍ତୁ ସେ ଯାହା ଉଠାନ୍ତି, ତାଙ୍କର ପୂର୍ଣ୍ଣ ବିଶ୍ୱାସ ଯେ ତାହା ହିଁ ସାରା ଟୋକେଇର ଶ୍ରେଷ୍ଠ ବାଇଗଣ ! ତାଙ୍କୁ ପଂଝାଏ ଚଖା ମିଶି କହନ୍ତି ଯେ ସେଇଟା କୁଆଡ଼େ ଭେଜେରା, ମଞ୍ଜିଆ, ପୋକଡ଼ା, ବନ୍ଧା ପୋଚକା ! ସେ କିନ୍ତୁ କାହାକୁ କାନାଏ ନାହିଁ । ମନ ଦୃଢ଼ କରି ଯାହା ଧରିଥାଏ, ତାକୁ ନେଇ ହାଟରୁ ବାହୁଡ଼ି ଯାଏ । ଆଉ ଥୋକେ ମଧ୍ୟ ଯେମିତି ଖପ୍ କିନା ଗୋଟାନ୍ତି । ସେମାନଙ୍କ କଥା କିନ୍ତୁ ଅଲଗା । ସେମାନେ ସାଧାରଣତଃ ଭଡ଼ାଟିଆ । ସେମାନଙ୍କ ତାଲିକାରେ ଆଗରୁ ବାଇଗଣ ଲେଖାଥାଏ । ସେମାନେ ଚଞ୍ଚଳ ଗୋଟାଏ ଝୋଲରେ ପକେଇ ନେଇଯାଆନ୍ତି । ନିଜ ପାଇଁ ତ ନୁହେଁ, ଏଣୁ ସେଇଟା ପୋକଡ଼ା ହେଲେ କେତେ ଭେଜେରା ହେଲେ କେତେ ! —ଦର୍ଶନ ଅଧ୍ୟାପକ ପରୀକ୍ଷାର୍ଥୀ ଛାତ୍ରଙ୍କ

Digitized by srujanika@gmail.com

ଆଗରେ ସେମାନଙ୍କ ଭିତରେ ସମଗ୍ର ଜୈନମତ ବଡ଼ା ବାନ୍ଧ କାମ ଭୁଲେଇ ଦେଲ ପରି ! ବଳିଜରେ ସେମାନଙ୍କର ଆପଣାପଣ ନଥାଏ; ଭଲ ଅସାର ଉପରେ ଜୋର୍ ନଥାଏ । ବାଛିବା ଉପରେ ସେମାନେ ଆଦୌ ଗୁରୁତ୍ୱ ଦିଅନ୍ତିନାହିଁ; କାରଣ ସେମାନଙ୍କ ପାଇଁ ତାହା କୌଣସି ଧରଣର ସମସ୍ୟା ନୁହେଁ । ଅତି ବେଶି ହେଲେ, ହୋଇପାରେ ଏଇଟା ଗୋଟାଏ ଫେସନ୍‌ବାଜି । ଏକ ପ୍ରକାର ସାମାଜିକ ବାହାଦୁରି । "ଆମ ଝୋଲରେ ଯାହା ଖୋଜିବ ତା' ପାଇବ । ଏବେ କ'ଣ ସମସ୍ତେ ବାଇଗଣ କିଣିଲେଣି; ଏଣୁ ସେଥିରୁ ଗୋଟାଏ ମଧ୍ୟ ପଡ଼ିଥାଉ"—ଏଇ ଯୁକ୍ତିରେ । ଅନ୍ୟମାନଙ୍କୁ ଦେଖି ଗୋଷ୍ଠୀ-ରୁଚି ଅନୁସାରେ ଟୋପି ପିନ୍ଧିଲାପରି, ବା ମାଡ୍ରାସକୁ ଚମଡ଼ା କିଣିବାକୁଯାଇ ପଣ୍ଡିଚେରୀରୁ ଧର୍ମଗ୍ରନ୍ଥ କିଣିଲା ପରି !

ଶ୍ରେଷ୍ଠଟିକୁ ବାଛିବା ସହଜ ନୁହେଁ; କାରଣ ତାହା ସମ୍ଭବ ନୁହେଁ; କାରଣ ନିର୍ଦ୍ଦିଷ୍ଟ ରୂପେ ଶ୍ରେଷ୍ଠ ବୋଲି କିଛି ନାହିଁ, ଯାହା ସାଧାରଣ ଭାବରେ ଅନୁଭବ ସାପେକ୍ଷ ! ସେଇଟା ଗୋଟାଏ ଆପେକ୍ଷିକ ଗୁଣ ଏବଂ ଭାରି ବ୍ୟକ୍ତିଗତ ଗୁଣ । ପ୍ରଥମେ ମନେହୁଏ ଯେ ଶ୍ରେଷ୍ଠଟିକୁ ଜାଣିବା କିମ୍ବା ଚିହ୍ନିବା, ଚିରନ୍ତନ ପରୀକ୍ଷା-ସୁଲଭ ଅଭିଜ୍ଞତା ନୁହେଁ; ବରଂ ଗୋଟାଏ ପ୍ରକାର ଅନୁଭବ । ମୋ ପାଇଁ, ଏଇଠାରେ, ବର୍ତ୍ତମାନ ସକାଶେ ଏଇ ପଦାର୍ଥଟି ଶ୍ରେଷ୍ଠ ! ଏଥିରୁ କୌଣସଟିକୁ ଚହଲେଇ ଦେଲେ ଶ୍ରେଷ୍ଠତ୍ୱ ଆଉ ଉପପାଦ୍ୟ ହୋଇପାରୁନାହିଁ । ଆଉ କାହାପାଇଁ ବା ଆଉ କୌଣସିଠାରେ ଅନ୍ୟ ସମୟରେ ଏତଦ୍‌ଭିନ୍ନ ଅନ୍ୟ ପଦାର୍ଥ ଶ୍ରେଷ୍ଠ ହୋଇପାରେ; କିନ୍ତୁ ସେଇଟା ମଧ୍ୟ ଆଉ ଏକ ଅନୁଭବ-ବିନ୍ଦୁ ଏବଂ ତାହା ସହିତ ମୋର ବର୍ତ୍ତମାନ ଅନୁଭବର କିଛି ସମ୍ପର୍କ ନାହିଁ ।

କିନ୍ତୁ ଆଉ ବେଳେବେଳେ ଲାଗେ ଯେ ଏଇଟା ଗୋଟାଏ ଯୋଗାଯୋଗ କଥା । ପ୍ରତ୍ୟେକ ମଣିଷ ଭିତରେ ଗୋଟାଏ ପରିମିତି ଅଛି । କାଳ ବୋହି ଚାଲି-ଥାଏ; ସେ ଗୋଟିଏ ଧାରା । ସ୍ଥାନ ମଧ୍ୟ ତଦନୁରୂପ ବିକ୍ଷିପ୍ତ ହେଉଥାଏ; ସେ ଆଉ ଗୋଟିଏ ଧାରା । ପଦାର୍ଥ ବା ବ୍ୟକ୍ତି ମଧ୍ୟ ଗୋଟିଏ ପ୍ରବହମାନ ଧାରା । ଏ ସମସ୍ତ ଧାରା ବୋହି ଯାଉଯାଉ କୌଣସି ଗୋଟାଏ ବିନ୍ଦୁରେ ଗୁନ୍ଥିକିନା ଅକସ୍ମାତ୍ ଯୋଗାଯୋଗ ହୋଇଯାଏ । ମଣିଷ ମନର ସେ ରହସ୍ୟମୟ ପରିମିତିର ଚତୁଷ୍କୋଣ ଉଛୁଳିଯାଏ । ଆଶ୍ଚର୍ଯ୍ୟବତ୍ ଗୋଟାଏ କ'ଣ ଘଟିଯାଏ । ସେ ଏକ ବସ୍ତୁର ପୂର୍ଣ୍ଣ ଅନୁଭବ, ଶ୍ରେଷ୍ଠତ୍ୱର ଅନୁଭବ, ପୂର୍ଣ୍ଣତ୍ୱର ଅନୁଭବ ! ସେଇଠି ପୋକଟି, ଖଣ୍ଡିଆ ଆଦି ଆଂଶିକ ବିଚାର ଆସିବ କେଉଁଠାରୁ ? କିନ୍ତୁ ଏ ଅନୁଭବଟିକୁ

Digitized by srujanika@gmail.com

ଧାରଣ କରି ହୁଏନାହିଁ ! ସେ ସବୁ ପ୍ରବଳ ପ୍ରବାହକୁ ରୋଧି ହୁଏନାହିଁ, ସମୁଦ୍ର ଭଳି ସେ ସମସ୍ତ ଗର୍ଭିତ ମଧ୍ୟ କରି ହୁଏନାହିଁ । କାଳ ବହିଯାଏ ଏବଂ ଆସ୍ତେ ଆସ୍ତେ ତାର ଲିଭି ଆସେ । ଶ୍ରେଷ୍ଠତ୍ୱର ମୁକ୍ତାଫଳ ବି କ୍ରମଶଃ ମଳିନ ହୋଇଯାଏ । ସ୍ମୃତିର ଅମାର ଘରେ ତାର ରୂପ ଆକାର ମଧ୍ୟ ବଦଳିଯାଏ ।

ଏଣୁ ବେଳେବେଳେ ଲାଗେ ଯେ ବ୍ୟକ୍ତିର ମନ ଇତସ୍ତତଃ ମୁହୂର୍ତ୍ତମାତ୍ର ସାମୟିକ ବିଳାସ ଉପଭୋଗ କରୁଥିବା ମୁହୂର୍ତ୍ତଗୁଡ଼ିକ କ'ଣ ଶ୍ରେଷ୍ଠତା କି ? ହୋଇପାରେ; କିମ୍ବା ପ୍ରତି ମୁହୂର୍ତ୍ତରେ ଯାହା ଘଟି ଚାଲିଛି, ଯଦି ତଦ୍‌ଭିନ୍ନ ଆଉ କିଛି ଘଟିବା ସମ୍ଭବ ନୁହେଁ, ତେବେ ସେଇ ଅନିବାର୍ଯ୍ୟଟିକୁ ମନ ବୁଝେଇବା ସକାଶେ ଆମେ ହୁଏ ତ ଶ୍ରେଷ୍ଠ ବୋଲି କହିଥାଉଁ । ଯଦି ତାହା ଅନିବାର୍ଯ୍ୟ ଏବଂ ବିକଳ୍ପ-ରହିତ ଏକକ, ତାକୁ ଶ୍ରେଷ୍ଠ କହି ଆପେକ୍ଷିକ ମୂଲ୍ୟ ଦେବାର କ'ଣ ପ୍ରୟୋଜନ ? ବିଭିନ୍ନ ତୃଷ୍ଣା ମେଣ୍ଟାଇବା ସମୟରେ ପାଖାପାଖି ଯେପରି ଜଗତର ଶ୍ରେଷ୍ଠ ବସ୍ତୁ, ସେହିପରି । ସେହି ସମୟ ପାଇଁ ହୁଏତ ଅନ୍ୟ କୌଣସି ବିଷୟରେ ସଚେତନ ରହିବାର ସମ୍ଭାବନା ନ ଥାଏ । ଶୋଷ ହିଁ ଅନ୍ତର ବାହାର ଚାରିଆଡ଼େ ଏପରି କୋଳାହଳ କରୁଥାଏ ଯେ ଅନ୍ୟ ସ୍ୱର ଶୁଣାଯାଏ ନାହିଁ; କିନ୍ତୁ ଶୋଷ ମେଣ୍ଟାଇଲା ପରେ ଜଣାଯାଏ ଯେ ସେଇଟା କେବଳ ଗୋଟିଏ ମାତ୍ର ସ୍ୱର । ଭିତରର ବିସ୍ତୀର୍ଣ୍ଣ ପରିମିତି ଆଗଭଳି ରିକ୍ତ, ଅନାବୃତ, ଅପରିପୂର୍ଣ୍ଣ ପଡ଼ି ରହିଛି । ଏ ପରିମିତିଟା ବିଷୟରେ ନିଶ୍ଚିତ କିଛି ଅନୁଭବ ନାହିଁ । ଯେତେବେଳେ ସେ ଆଶ୍ଚର୍ଯ୍ୟ ଭାବରେ ପରିପୂର୍ଣ୍ଣ ହୋଇଯାଏ, ସେଇ ପୂର୍ଣ୍ଣତାର ବନ୍ୟାଭିତରେ ତାକୁ ଏବଂ ତା'ର ଚତୁଷ୍କୋଣକୁ ଅନୁଭବ କରି ହୋଇଯାଏ । ନଚେତ୍ ଗୋଟିଏ ଚିରନ୍ତନ ଅସ୍ୱସ୍ତିବୋଧ କେବଳ ଉଚ୍ଚାଟ ସୃଷ୍ଟି କରୁଥାଏ । ଟୋକେଇକ ଯାକ ବାଇଗଣ ବାଛିଗଲା ପରେ ମଧ୍ୟ ଶ୍ରେଷ୍ଠଟିକୁ ବାଛି ହୁଏନାହିଁ । ଅଭାବବୋଧ ସତେ ବା ଆଉ ମେଣ୍ଟିବନାହିଁ । ଏଇ ଅଭାବବୋଧଟି ଗୋଟିଏ ପ୍ରକାର ଦହନ; ଏକ ପ୍ରକାର ଜ୍ୱାଳା । ସେଇଟା ଯଦି ଖାଲି ଗୋଟିଏ ନିଶ୍ଚେଷ୍ଟ ରିକ୍ତତା ହୋଇଥାନ୍ତା, ଯଦି ଅହରହ ସକ୍ରିୟ ଭାବରେ ଭିତରେ ଏମିତି କଡ଼ ଲେଉଟାଉ ନ ଥାନ୍ତା, ତେବେ ନିଶ୍ଚିନ୍ତ ଶୋଇଯାଇ ହୁଅନ୍ତା । ଶ୍ରେଷ୍ଠଟିଏ ଖୋଜିବାକୁ ଏତେ ବ୍ୟାକୁଳତା ଆସନ୍ତା ନାହିଁ; କିନ୍ତୁ ସେ ରଖେଇ-ଥୋଇ ଦିଏନାହିଁ, ଅହରହ ଚଡ଼େ । ଗୋଟିଏ ଜରୁରୀ ପରିସ୍ଥିତି ସୃଷ୍ଟି କରିଦିଏ । ଫଳରେ ଅନ୍ୟର ଉଦାହରଣ ଦେଖି ଶିଖିବାକୁ ଇଚ୍ଛାହୁଏ । ଅନ୍ତତଃ ସେ ଯେମିତି ବାଛି ପାରୁଛି, ସେମିତି ବାଛିଲେ ଯଦି ମିଳିଯାଏ । କିନ୍ତୁ ସମସ୍ତେ ଯଦି ଅନ୍ଧ, ଜଣକ ଅଣ୍ଡାଳିବା ଆଉ ଜଣକୁ କ'ଣ ବା

Digitized by srujanika@gmail.com

ସାହାଯ୍ୟ କରିପାରିବ ? ତା' ବାହାରେ ଅବିକଳ ଦୁଇଟି ମୁହୂର୍ତ୍ତ ନାହିଁ— ଯେପରି ଅବିକଳ ଦୁଇଟି ପଦାର୍ଥ ମଧ୍ୟ ନାହିଁ । ଦେଶ କାଳ ଭେଦରେ ଜୀବନର ଘଟଣାପରମ୍ପରା ଏବଂ ତଜ୍ଜନିତ ପରିସ୍ଥିତି ସମସ୍ତେ ଏକଠାରୁ ଅନ୍ୟଟି ଭିନ୍ନ । ଏଣୁ ବର୍ତ୍ତମାନ ଏଇଠାରେ ମୋ ପାଇଁ କ'ଣ ପ୍ରୟୋଜନ, ତାହା ଆଉ କାହାର ଅନ୍ୟ ସମୟର ଅଭିଜ୍ଞତା କହିପାରିବ ନାହିଁ । ଗୋଟିଏ ରାସ୍ତାରେ ଚାଲୁଥିଲେ-ବି ପରି ବୋଧ ହେଉଥିବା, ଦୁଇଜଣ ବାଟୋଇଙ୍କର ପାଦଚିହ୍ନ ଭିନ୍ନ ଭିନ୍ନ ଏବଂ ଭିନ୍ନ ହେବାକୁ ବାଧ୍ୟ । ଭୂମିର ତାରତମ୍ୟ କୌଶଳରେ ଦୂର କରି ପାରିଲେ ମଧ୍ୟ, କାଳର ତାରତମ୍ୟ ଅନିବାର୍ଯ୍ୟ । ଏକ ସ୍ଥାନରେ, ଏକ ସମୟରେ ଦୁଇଜଣଙ୍କର ପାଦଚିହ୍ନ ପଡ଼ିବା ଅସମ୍ଭବ । ଏ ଦୃଷ୍ଟିରୁ ମୁଁ ମଧ୍ୟ ମୋର ଅତୀତ ଓ ଭବିଷ୍ୟତ-ଠାରୁ ଭିନ୍ନ । ତେବେ କ'ଣ କରାଯାଇପାରେ ? ପରିସ୍ଥିତି ଭାରି ଜଟିଳ, ଭୟଙ୍କର ନିରୁତ୍ସାହଜନକ ।

ଦୁର୍ଗମ ଅରଣ୍ୟ ଭିତରେ ହଠାତ୍ ବାଟ ନ ପାଇ ଧନ୍ଦ ହେବା କଥା । ପ୍ରଥମେ ଅନୁଭବକୁ ଆସେ ଯେ, ଏହା ଏକ ଅରଣ୍ୟ ଏବଂ ଏଇଠାରୁ ବାହାରିଯିବାକୁ ହେବ । ତା' ପରେ ପ୍ରଶ୍ନ ଉଠେ—ବାଟ କାହିଁ ?···ଯେଉଁମାନେ ବଳଶାଳୀ, ସେମାନେ ନିଜେ ଲଟା, ବୁଦା କାଟି ବାହୁବଳରେ ନଆ ବାଟ ପକେଇ ଦିଅନ୍ତି । କିନ୍ତୁ ଅଧିକାଂଶ, ଯେଉଁମାନେ ନିହାତି ଯିବାକୁ ଚାହାନ୍ତି ଏବଂ ନିଜେ ଖୋଜି ନିଜ ପନ୍ଥା ବାହାର କରିବାର ସାମର୍ଥ୍ୟ ନ ଥାଏ, ଇଚ୍ଛା ମଧ୍ୟ ନ ଥାଏ, ସେମାନେ ଅନୁସରଣ କରନ୍ତି । ଚଳି ରାସ୍ତା ପାଇଲେ ଆଗେଇ ଯାଆନ୍ତି । ନୂଆ କିଛି ନାହିଁ । ଯାହା ଥରେ ଘଟିଥିଲା, ତାହା ଆଉ ଥରେ ଏବଂ ବାରମ୍ବାର ହୁଏତ ଘଟିପାରେ —ଏଇ ଆଶାରେ ଚାଲିଥାନ୍ତି; କିନ୍ତୁ ଆଉ ଜଣେ କେହି କୁକୁରଟିଏ ଆଗରେ ଚଳେଇ ହିମାଳୟ ଚୂଳରେ ପହଞ୍ଚି ପାରିନାହିଁ ।

ତଥାପି ମହାଜନ ପନ୍ଥା ଅଗତ୍ୟା ଗ୍ରହଣୀୟ । ସେମାନେ ତାଙ୍କ କ୍ଷେତ୍ରରେ ଯାହା କରିଛନ୍ତି, ତା ଅବିକଳ ନ ହେଲେ ମଧ୍ୟ ଅନ୍ୟକ୍ଷେତ୍ରରେ ମୋଟାମୋଟି ଭାବରେ ପ୍ରଯୋଜ୍ୟ ହୋଇଯାଏ । ଧରାଯାଉ ଯେମିତି ଭାଷାର ବର୍ଣ୍ଣମାଳା ଶିଖିଲା ପରି । ସେତକ ଅବଶ୍ୟ ଗ୍ରହଣୀୟ । ତାକୁ ନେଇସାରିଲା ପରେ ଶବ୍ଦ, ବାକ୍ୟ ଆଦି ପାଇଁ ପ୍ରତ୍ୟେକ ବ୍ୟକ୍ତିର ପ୍ରତି ମୁହୂର୍ତ୍ତର ସ୍ୱାଧୀନତା ଅଛି; କିନ୍ତୁ ଆଗ ଏ ଅକ୍ଷରକୁ ଗ୍ରହଣ କରିବାକୁ ହେବ । ମହାଜନଙ୍କର ମହାକାବ୍ୟ ସେଥିରେ ଲେଖା ନୋହୁ, ଅନ୍ତତଃ ଦି'ପଦ ଚଉତିଶା ତ ସମ୍ଭବ ହୋଇପାରିବ ।

Digitized by srujanika@gmail.com

ମହାଜନ ପନ୍ଥା ଗୋଟିଏ ବଡ଼ ଦାଣ୍ଡ । ସେଇଠି ଗଳିକନ୍ଦି ନାହିଁ, ଦେଢ଼ ହଜାର ବାଙ୍କ ନାହିଁ । ସବୁ ମିଶାମିଶି ହୋଇ ଗୋଟିଏ ଖୁବ୍ ଓସାରିଆ, ସମସ୍ତଙ୍କୁ ସୁହାଇଲା ଭଳି ରାସ୍ତା । ସେଇଠି ଯେ ଯାହା ବାଗ ରଖାକରି ଚାଲିପାରେ; ତଥାପି ସହଯାତ୍ରୀର ଅଭାବ କେବେ ନାହିଁ । ସେଇଠୁ ବହୁ ସରୁ ରାସ୍ତା ବାହାରିପାରେ, ପୁଣି ସେହିପରି ବହୁ ରାସ୍ତା ଆସି ମିଶି ମଧ୍ୟ ପାରେ । ଏଣୁ ତାକୁ ରାସ୍ତା କହିବା ମଧ୍ୟ ସମୟ ସମୟରେ ଅସମୀଚୀନ ବୋଧହୁଏ । ସେଇଟା ହୁଏତ ଗୋଟାଏ ପ୍ରବହମାନ ପଡ଼ିଆ, ବୋହି ଯାଇଛି କାହିଁ କେଉଁ ଅପନ୍ତରା ଶରଧା ବାଲି ଉପରୁ ଗିରି ଚୂଳଯାଏ ।

ଆଉ କେବେକେବେ ମନେହୁଏ ଯେ ମହାଜନ ପନ୍ଥାଟି ହୁଏତ ବଡ଼ଦାଣ୍ଡ ନୁହେଁ, ବରଂ ଅଖଣ୍ଡ ଅରଣ୍ୟ ଭିତରେ ପାଣି ପିଇବା ପାଇଁ ଓହ୍ଲାଇଥିବା ପ୍ରକାଣ୍ଡ ଦନ୍ତାହାତୀର ରାସ୍ତା । ସେ ତା'ର ସ୍ୱାଭାବିକ ଭଙ୍ଗୀରେ ସହଜ ଖୋଜ ପକେଇ ପଲସି ଗଲାବେଳେ ଗଛଲଟା ଆଡ଼େଇ ହୋଇଯାଏ, ଡାଳ ଭାଙ୍ଗିଯାଏ, ଲଇ ଛିଣ୍ଡିଯାଏ ! ହାତୀ ପାଦତଳେ ଭୂଇଁକୁ ଯିବା ଅନାଏଁ ନାହିଁ; କିନ୍ତୁ ଛିଡ଼ ପଡ଼ିଥିବା ଅତଡ଼ା ପାଖରୁ ଆଡ଼େଇ ହୋଇଯାଏ, ଗଣ୍ଡ ପାଖରୁ ଘୁଞ୍ଚି ଆସେ । ବାଘ ହେଣ୍ଟାଳିଲେ ସତର୍କ ହୋଇଯାଏ । ତା' ଯିବା ବାଟରେ ପଲ ପଲ ହାତୀ ବଣ ଭିତରେ ସୁଅ କାଟି ଦିଅନ୍ତି । କୁଣ୍ଠିତ କରନ୍ତି, ବଣ ଓସାରି ହୋଇଯାଏ, ଦୁଇଭାଗ ହୋଇଯାଏ । ସେହିପରି, ଭଦ୍ରବରେ ଦୁଇକୂଳ ଖାଉଥିବା ଯମୁନା ବାଟ ଦେଇ-ଦେଲା ପରି ମହାଜନମାନଙ୍କୁ ସଂସାର ବାଟ ଦେଇଦିଏ । ମନେହୁଏ ଯେ ସବୁଦିନ ପାଇଁ ଏ ସମସ୍ୟାର ସମାଧାନ ହୋଇଗଲା—ବଣ ଭିତରୁ ବାହାରି ଯିବାକୁ ରାଜପଥ ଫିଟିଗଲା ।

କିନ୍ତୁ ଯଦି ଏଇ ହାତୀ ଧରିସା ଉପରେ ପିମ୍ପୁଡ଼ିଟିଏ ଯିବାକୁ ବାହାରେ ତା'ର ସମସ୍ୟା ହେବ ଆଉ ଗୋଟିଏ ପ୍ରକାରର, ଆଉ ଗୋଟିଏ ପର୍ଯ୍ୟାୟର । ଯେଉଁ ସରୁ ସୂତା ପରି ପାଣି ଧାରଟିଏ ହାତୀ ପଲସି ଗଲାବେଳେ ତା' ଖୋଜ ମଝିରେ ପଡ଼ିଗଲା, ସେ ହୋଇଯାଏ ଗୋଟିଏ ଖରସ୍ରୋତା ନଈ । ଯେଉଁ ବୁଦାଲଟା ଥୋଡ଼ ପାହାର ବାଜ ଝାଉଁଳି ଗଲେ; କିନ୍ତୁ ମଲେ ନାହିଁ, ସେମାନେ ପୁଣି ଶିଖା ଟେକି ଠିଆ ହୋଇଯାନ୍ତି ଦୁରଧିଗମ୍ୟ ସମସ୍ୟା ହୋଇ । ପିମ୍ପୁଡ଼ିକୁ କଟା ତଳେତଳେ ଗଳିବାକୁ ପଡ଼େ, ଅନେକ ଉଚ୍ଚ ନୀଚ ଭୂମି ପାର ହୋଇ ନଈ ପହଁରିବାକୁ ପଡ଼େ । ଏ ସବୁ ହାତୀର ପାହୁଣ୍ଡ ମଝିରେ ତା' ପାଇଁ ସମ୍ପୂର୍ଣ୍ଣ ଅଜ୍ଞାତ ଭୂମି ।

Digitized by srujanika@gmail.com

ହସ୍ତୀ-ପନ୍ଥା ହସ୍ତୀକୁ ସିନା ସୁହାଏ, ପିମ୍ପୁଡ଼ି ପାଇଁ ତାର ଅର୍ଥ କିଛି ନାହିଁ, ତା' ପାଇଁ ମୋଟ ଉପରେ ସେଇଟା ପନ୍ଥା ମଧ୍ୟ ନୁହେ ।

ମହାଜନ-ପନ୍ଥା ତଦ୍ରୂପ ମହାମାନବଙ୍କ ପାଇଁ । ବାକି ଗ୍ଲେଟକାଟିଆ, ସାଧାରଣ ଆମ ତୁମ ଭଳି ଲୋକଙ୍କ ସମସ୍ୟା ଅଲଗା । ତାକୁ ସେ ମହାଜନ ଜୀବନରେ ଖୋଜିଲେ ମିଳିବ ନାହିଁ ବା ପରିଶେଷରେ ସେମାନେ ଯେଉଁଠି ଥୋଡ଼ ପାହାର ପକେଇ ପାଣି ଶୋଷନ୍ତି, ସେଇଠି ପିମ୍ପୁଡ଼ି କେବେ ପହଞ୍ଚିବ ବୋଲି ଆଶା ମଧ୍ୟ କରି ହେବ ନାହିଁ । ପିମ୍ପୁଡ଼ି ପାଇଁ ଶୁଖିଲି ତେନ୍ତୁଳି ପତ୍ରଟିଏ ମଧ୍ୟ ଗୁରୁଭାର, ବଟପତ୍ର ଖଣ୍ଡିଏ ଗୋଟାଏ ଶୁଖିଲି ବୋଇତ । ଯେଉଁ ଅଡ଼ଡ଼ା ପାଖରୁ ହାତୀ ଆଡ଼େଇ ହୋଇଯାଏ, ସେଇଠୁ ପିମ୍ପୁଡ଼ିଟି ଆଡ଼େଇ ହୋଇ ଯିବାର ପ୍ରୟୋଜନ ଅନୁଭବ କରିପାରେ ନାହିଁ, ବାଧ ହେଲାକଲେ ତା'ର କିଛି ଯାଏ ଆସେ ନାହିଁ । ତା' ମାନେ ଦୂରରୁ ହାତୀ-ପନ୍ଥାଟିକୁ ଦେଖି ପିମ୍ପୁଡ଼ି ଖୁବ୍ ଆଶା କରି ଆସି ଦେଖେ ଯେ ସେଇଠି ତା ପାଇଁ ନିରନ୍ଧ୍ର ବଣ; ପନ୍ଥା ମୋଟେ ନାହିଁ । ତା' ସ୍ଥିତି ବା ଗତିର ସମସ୍ୟା ସମ୍ପୂର୍ଣ୍ଣ ଅଲଗା, ଏଣୁ ପନ୍ଥା ମଧ୍ୟ ଅଲଗା ହେବା ଅନିବାର୍ଯ୍ୟ ।

କିନ୍ତୁ ସମ୍ପୂର୍ଣ୍ଣ ଅଲଗା ନୁହେଁ । ସେ ତା'ର ଗ୍ଲେଟ ଗ୍ଲେଟ ନଈ, ନାଳ, ପତ୍ର, ଡାଙ୍ଗ, ଲଇ ପାରି ହୋଇ ଆସି ଦେଖେ ଯେ ଗୋଟାଏ ବେଶ୍ ସମତଳ ଉପତ୍ୟକା । ସେଠି ତେର ଆଲୁଅ । ପାଖ ଆଖର ଅତିକାୟ ପାହାଡ଼ ପରି ଉଦ୍ଭିଦ ସବୁ ଠେଲି ହୋଇ ଯାଇଛନ୍ତି; ଘାସ ଗୁଣ୍ଡ ହୋଇ ଆଡ଼େଇ ହୋଇ-ଯାଇଛନ୍ତି । ସେ ବସୁମ୍ବରେ ଅନାଏଁ, ସେ ଖଣ୍ଡିକ ବାଟ ତାରି ଖୁବ୍ ନିର୍ଦ୍ଦନ୍ଦ୍ୱରେ କଟିଯାଏ । ସେ ଉପତ୍ୟକାଟି ହାତୀର ଗୋଟାଏ ପାଦଚିହ୍ନ ମାତ୍ର । ଏଭଳି ଗୁଡ଼ିଏ ଉପତ୍ୟକା ପାରି ହୋଇଗଲେ ପିମ୍ପୁଡ଼ିର ଯାତ୍ରା ହୁଏ ତ' ସରିଯିବ । କିନ୍ତୁ ସମ୍ପୂର୍ଣ୍ଣ ଘନ ବନାନୀ ଭିତରେ ବାଟ ଖୋଜିଥିଲେ ସେ ବୋଧହୁଏ ଏତେ ଆଗେଇ ପାରି ନଥାନ୍ତା ! ଅବଶ୍ୟ ଯେଉଁ ପିମ୍ପୁଡ଼ିମାନେ ସେଇଠି କେବଳ ମାଟି ଖୋଳି ବସା ବାନ୍ଧିବାକୁ ଚାହାନ୍ତି ଏବଂ ଆଗେଇବାକୁ ସବୁବେଳେ ଅମଙ୍ଗ ତାଙ୍କ କଥା ଏଠି ଅବାନ୍ତର ।

ଅନନ୍ତ ମହାକାଶରେ ନିହାରିକାର ଆଲୋକ ରେଣୁ ପରି ଝାପ୍‌ସା ଗୋଟାଏ ପ୍ରାଚୀନ ଚଲ୍ ରାସ୍ତା, ଏଇ ମହାଜନ ପନ୍ଥା । ମଣିଷ ଜୀବନରେ ସାଧାରଣ ବଞ୍ଚିବା ପାଇଁ ଯାହା ସବୁ କଣାବଜା ହୋଇ ବଦଳି ଯାଆନ୍ତି ସେ ସବୁ ଦେଶ କାଳର ଅନୁସାରୀ; ମାତ୍ର ସବୁ ଖୋଳପା ତଳେ ଗୋଟାଏ ପ୍ରସ୍ତ ମଞ୍ଜି ଥାଏ, ସେଇଟା ବଦଳେ ନାହିଁ । ତାକୁ ଛୁଇଁ ପାରିଲେ, ଏବେ ମଧ୍ୟ ଘୃତ ସମିଧ ଦେଇ ଜଳେଣ

Digitized by srujanika@gmail.com

ଅଗ୍ନିଷ୍ଟୋମ ଯାଗ କରିପାରେ ବା ସେ ପ୍ରକାର ଯାଗ ଦ୍ୱାରା ଯେଉଁ ଅଭିଷ୍ଟ ସିଦ୍ଧ ହେଉଥିଲା, ତା' ପାଇଁ ଏବେ ମଧ୍ୟ ଯାଗଧର୍ମୀ ହୋଇପାରେ । କାଳର ଗତି ମତେ ମଣିଷର ମୌଳିକ ସମସ୍ୟା ଯାହା ଥିଲା ବର୍ତ୍ତମାନ ମଧ୍ୟ ପ୍ରାୟ ସେଇଆ, ମୌଳିକ ଲକ୍ଷ୍ୟ ଯାହାଥିଲା, ବର୍ତ୍ତମାନ ମଧ୍ୟ ପ୍ରାୟ ସେଇଆ । ଏଣୁ ସବୁ ସମୟ ପାଇଁ ସମସ୍ତଙ୍କ ସକାଶେ ସାଧାରଣ ମଣିଷର ମୌଳିକ ସ୍ୱରୂପକୁ ସ୍ପର୍ଶ କରୁଥିବା ଗୋଟାଏ ମାର୍ଗ ସମୟ ସମୟରେ ଉଦ୍ଭାବିତ ହୋଇଯାଏ । ଯେ ତାକୁ ପ୍ରଥମେ ଉଦ୍ଭାବନ କରନ୍ତି, ସେ ଅବଶ୍ୟ ମହାଜନ, ତାଙ୍କ ପନ୍ଥା ମହାଜନ ପନ୍ଥା । ସେଥିରେ ଥାକ ଥାକ ହୋଇ ଶତାବ୍ଦୀଗୁଡ଼ିକୁ ଥୋଇଗଲେ ମଧ୍ୟ ଆହୁରି ଅନେକ ଖାଲିକା ଥାନ ରହିଯାଏ ଭବିଷ୍ୟତ ପାଇଁ । ପୁରୁଷ ପୁରୁଷ ଧରି ମଣିଷ ସେଇ ବାଟେ ଗଲେ ମଧ୍ୟ ସମସ୍ତଙ୍କୁ ଧାରଣ କରି ରଖିପାରେ ସେଇ ମହାଜନ ପନ୍ଥା; ସମସ୍ତଙ୍କୁ ଗୋଟାଏ ଆଡ଼କୁ ଆଗେଇ ନେଇ ଯାଇପାରେ । ସମସ୍ତଙ୍କର ନିଜ ନିଜର ମୌଳିକତା ପାଇଁ ଅବକାଶ ଦିଏ, ସେମାନଙ୍କ ପାଇଁ ସ୍ୱତନ୍ତ୍ର ଖିଅଟିଏ ଫିଟେଇ ନେଇଯାଏ ।

ମହାଜନ ପନ୍ଥା ଏ ଦିଗରୁ ହୁଏ ତ ବେଶ୍ ସୁବିଧାଜନକ ଗୋଟିଏ ବଢ଼ଦାଣ୍ଡ । ଅନ୍ୟ ଦିଗରୁ କିନ୍ତୁ ସେଇଟା ଗୋଟିଏ ହାଣ୍ଡି-ପନ୍ଥା; କେବଳ ପନ୍ଥାର ଆଭାସ, କିନ୍ତୁ ପନ୍ଥା ନୁହେଁ । ଯେଉଁମାନେ ଅଣମହାଜନ, ଦିଗବାରି ହୁଏ ତ ସେଥିରେ ଗଢ଼ିଯାନ୍ତି ବା ସେଇ ଉପତ୍ୟକାଗୁଡ଼ିକୁ ପୋଡ଼ି ନିଜ ବାଟ ନିଜେ କାଟନ୍ତି ।

କିନ୍ତୁ ଏ କଥା ହୁଏ ତ ସତ ଯେ, କୌଣସି ମହାଜନ ତାକୁ ନିଜ ପନ୍ଥା କରି ଆଉଥରେ ଗ୍ରହଣ କରିବ ନାହିଁ—କାରଣ ସେ ମହାଜନ । ସେ ବାଟ ଫିଟେଇ-ବାରେ ବିଶ୍ୱାସ କରନ୍ତି; ଅନୁସରିବା ତାଙ୍କ ଧର୍ମ ନୁହେଁ । ସାଧାରଣ ମଣିଷ ଭିତରେ ଯେଉଁ ଶ୍ରେଷ୍ଠ ଶ୍ରେଷ୍ଠ ବିଦ୍ରୋହଗୁଡ଼ିକ ମୁଣ୍ଡ ନୁଆଇଁ ମନର ଅନ୍ଧାର ଭିତରକୁ ଲୁଚିଯାନ୍ତି ସେଇ ସମସ୍ତ ବିଦ୍ରୋହ ହିଁ ପୁଣି ପୁଞ୍ଜିଭୂତ ହୋଇ ଜନ୍ମ ନିଏ ଏକ ମହାଜନ ରୂପରେ, ଫଳରେ ପୁଣି ଏକ ନୂତନ ପନ୍ଥା ଫିଟିଯାଏ । ଏହିଭଳି ଯୁଗେ ଯୁଗେ ଧର୍ମର ଗ୍ଳାନି ହେଉଥାଏ ଏବଂ ସଂସ୍ଥାପନ ବି ହେଉଥାଏ ।

ବାଇଗଣ ବାଛୁବା କିଛି ଅନିବାର୍ଯ୍ୟ ନୁହେଁ । କିନ୍ତୁ ସବୁ ଚେଷ୍ଟା ସତ୍ତ୍ୱେ ଯଦି ଭାଗ୍ୟରେ ପୋକଡ଼ାଟାଏ ପଡ଼ିଗଲା, ତାକୁ ଧରି ବରଂ ଏ ପାଳିକ ଗିଳିଯିବା ଭଲ—କାରଣ ଅନ୍ଧାର ପୂର୍ବରୁ ହାଟ ବାହୁଡ଼ା ନ ହେଲେ, ଟେଙ୍କି ଯେ ଢେର ଅସୁବିଧା !

---

Digitized by srujanika@gmail.com

# ଲଟେରି ସ୍ୱପ୍ନ

କେବଳ ଲକ୍ଷପତିଙ୍କୁ ଛାଡ଼ିଦେଲେ ବୋଧହୁଏ ସମସ୍ତଙ୍କର ଊଣାଅଧିକେ ଲକ୍ଷପତି ହେବାର ଅଭିଳାଷ ଥାଏ । ପବନରେ ଦୁର୍ଗ ତୋଳିଲେ ଇଟାଖର୍ଚ୍ଚ ପଡ଼େନାହିଁ । ସ୍ୱପ୍ନ ପାଇଁ ଶ୍ରମ କରିବାକୁ ପଡ଼େନାହିଁ । ମନର ଅନେକ ପ୍ରକାର କ୍ଷୁଧାକୁ କଳ୍ପନା ସାଙ୍ଗରେ ପରିଚୟ କରାଇଦେଇ ପାରିଲେ ଦୁହେଁ ମିଶି ଅନେକ ଅଦ୍ଭୁତ ରାଜ୍ୟ ବୁଲି ଆସନ୍ତି ଏବଂ ଏମିତି ସ୍ୱପ୍ନ ଭିତରେ କିଛି ପହଁରି ଆସିଲେ କ୍ଷୁଧା ବୋଧହୁଏ ଶାନ୍ତିତ ହୋଇଯାଏ; କିନ୍ତୁ ସେଇ ସମୟଟିକ ବେଶ୍ ପରିତୃପ୍ତ ମଧ୍ୟ ହୋଇଯାଏ । ଜୀବନର ସବୁ ସ୍ୱପ୍ନ ପାଇଁ ରିତ ଅଣ୍ଡେ ନାହିଁ ସତ; ତଥାପି ଯଥାସମ୍ଭବ ଏଥିରୁ କିଛି ନହେଲେ ବଞ୍ଚିବା ସମ୍ଭବ ନୁହେଁ । ହୁଏତ ତରୁଣ ମନର ଅଜସ୍ର ରଙ୍ଗ ସବୁବେଳେ ସ୍ୱପ୍ନ ଉପରେ ମଡ଼େଇ ହୋଇ ରହିପାରେ ନାହିଁ । କିନ୍ତୁ ତା'ର ସରହଦ ଡେଇଁ ଅନାଗତ ରାଜ୍ୟରୁ କଳା କଳା ଛାଇ ଓ ବରଫଝଡ଼ ମାଡ଼ି ଆସିବା ପୂର୍ବରୁ ବୋଧହୁଏ ଧନାଗମ ତୃଷ୍ଣା ସ୍ୱପ୍ନ-ଭୂମିକୁ ଗୋଟାଏ ଭାରି ତୀବ୍ର ଉଚ୍ଛାଟ ଆଣିଦିଏ । ଜୀବନର ଏଇ ମଧ୍ୟବର୍ତ୍ତୀକାଳୀନ ପୀଡ଼ି ବଦଳ ବେଳେ ଅନେକ ସମୟରେ କାନରେ ବାଜେ "ମାତ୍ର ଗୋଟିଏ ଟଙ୍କା— ଗୋଟିଏ ଟଙ୍କାରେ ଲକ୍ଷପତି ? କିଏ କହିପାରେ ମଣିଷ ଭାଗ୍ୟରେ କ'ଣ ଅଛି ? ଆଜି ଯେ ହୁଏତ ଦାଣ୍ଡର ଭିକାରି, କାଲି ସେ ହୋଇଯିବ ଲକ୍ଷପତି । ଲକ୍ଷପତିର ସୁଯୋଗ ! ମାତ୍ର ଗୋଟିଏ ଟଙ୍କାର ବିନିମୟରେ ଆପଣ ହେବେ ଲକ୍ଷପତି !!!" ଏପରି କେହି ବାବାଜି ନାହାଁନ୍ତି ଯେ କି ଏତକ ଶୁଣିଦେଇ ନିର୍ବିକାର ରହିଯାଇ-ପାରିବ ! ସ୍ୱପ୍ନରୁ ଅନ୍ତତଃ ଦି' ଟୋପା ଜଳ ଧୂଆଁ ନ ଶୋଷି ସେ ଯାଇ ପାରିବ ନାହିଁ । ଜୁଆ ଖେଳକୁ ଏଭଳି ଆହ୍ୱାନ ଆସିଲେ ସତ୍ୟପୁରୁଷ ଯୁଧିଷ୍ଠିର ମଧ୍ୟ ଏଡ଼ିଦେଇ ପାରନ୍ତି ନାହିଁ । ତା'ର ଗୋଟିଏ ଦୁର୍ନିବାର ନିଶା ଅଛି । ତା'ପାଇଁ ଅଜସ୍ର ଅକ୍ଲାନ୍ତ, ଅନେକ ଯୁକ୍ତି ମଧ୍ୟ ଅଛି ।

ସହଜଆ ମୁକ୍ତିପରି ସହଜଆ ଐଶ୍ୱର୍ଯ୍ୟର ମଧ୍ୟ ଗୋଟାଏ ଦୁର୍ବାର ଆକର୍ଷଣ ଅଛି । କିନ୍ତୁ ଟଙ୍କାଏ ଦେଇ ଲକ୍ଷପତି ହେବାର ମୋହ ବୋଧହୁଏ ଜୁଆ ଜଗତ

Digitized by srujanika@gmail.com

ପାଇଁ ମଧ୍ୟ ଏକ ବିଶେଷ ଖବର । ଗଲେ ମାତ୍ର ଟଙ୍କାଏ; କିନ୍ତୁ ଆସିଲେ ଲକ୍ଷେ ! ଏପରି ଚୁଟିକି ମାରିଦେଲେ ଆରବ୍ୟ ଉପନ୍ୟାସର ରତ୍ନଭଣ୍ଡାର ମିଳିଯିବା ବୋଧହୁଏ ଅନ୍ୟ କୌଣସି ବିଶ୍ୱରେ ସମ୍ଭବ ନୁହେଁ । କିନ୍ତୁ ପଂକ୍ତିଏ ଅଛନ୍ତି ଯେଉଁମାନେ କୌଣସି କାର୍ଯ୍ୟ ସହଜରେ ହେବାକୁ ପସନ୍ଦ କରନ୍ତି ନାହିଁ । ତାଙ୍କ ମତରେ ସହଜରେ ହୋଇଯିବା ଅର୍ଥ ଅନ୍ୟାୟ ହୋଇଯିବା । ଯେଉଁଠି ଯେତେ କଠିନ, ଯେତେ ପୀଡ଼ାଦାୟକ, ଯେତେ କ୍ଳାନ୍ତିକର ସେଇଠାରେ ସତ୍ୟ କୁଆଡ଼େ ସେଇ ପରିମାଣରେ ଧର୍ମ ନ୍ୟାୟ ସହିତ ଆତ୍ମପ୍ରକାଶ କରେ । ସହଜରେ କିଛି ବୁଝିଯିବା ମଧ୍ୟ ପାପ । ଯାହା ଯେତେ ସହଜରେ ବୁଝି ହୋଇଯାଏ, ତାହା ସେତିକି ଶସ୍ତା । ସହଜରେ ଗାଇଦେଲେ ତାହା ସଙ୍ଗୀତ ନୁହେଁ । ତୀର୍ଥଯାତ୍ରା କଲେ ଯଦି କାହା ପାଦରୁ ରମ ସରି ଯାଉ ନ ଥିଲା ଏବଂ ସେ ଜୀଅନ୍ତା ଫେରି ଆସୁଥିଲା ତେବେ ତା'ର ପୁଣ୍ୟ ଅତି ସାଧାରଣ ବୋଲି ବିଚାର କରିଯାଉଥିଲା । ରେଳରେ ଚଢ଼ିବା ସମୟରୁ ଓହ୍ଲାଇବା ପର୍ଯ୍ୟନ୍ତ ଯେକୌଣସି ସମୟରେ ଚାପିହୋଇ ମରିଯିବାର ଆଶଙ୍କା ଥିବାରୁ ଦିନକୁ ଦିନ ପୁଣ୍ୟାର୍ଜନ ପାଇଁ ତାହା ଏବେ ଅଧିକରୁ ଅଧିକ ଗ୍ରହଣୀୟ ହୋଇଗଲାଣି । କିନ୍ତୁ ଯଦି କେହି ବିମାନ ଯୋଗେ ଗଙ୍ଗା ବାରେଣୀକୁ ଚାଲିଗଲା, ତା'ର ପୁଣ୍ୟ ଫଳ ତ ନିଶ୍ଚୟ ନାହିଁ, ଓଲଟା ସେ ସମସ୍ତଙ୍କର ପାପଯାକ ମୁଣ୍ଡେଇବାକୁ ବାଧ୍ୟ ।

ଏହିପରି ବିଚାରଶୀଳ ଧର୍ମବିତ୍‌ଗୋଷ୍ଠୀ ଲଟେରି ଟିକଟ ବିରୁଦ୍ଧରେ ବହୁତ ଅପପ୍ରଚାର କରିବା ସ୍ୱାଭାବିକ । ତାଙ୍କ ଚିନ୍ତାର ପଶ୍ଚାତରେ କେବଳ ଅସହିଷ୍ଣୁତା, ଅସୂୟା, ପରର ଅଭିବୃଦ୍ଧିରେ ଗୋଟାଏ ପ୍ରକାର କାତର ଭାବ ହିଁ ବୋଧହୁଏ କାମ କରୁଥାଏ । ସେମାନେ ସ୍ୱୟଂ ଭାରି କଷ୍ଟରେ ହୁଏତ ଲୋକଲଜ୍ଜାକୁ ଭୟଙ୍କର ଲୋଭ ସମ୍ବରଣ କରି ଘରେ ରହି କୃଚ୍ଛ୍ର ସାଧନା କରନ୍ତି । କିନ୍ତୁ ଆଜିକାଲି ଯାହା ବା ଯେ ଯେଉଁଠି ଅର୍ଜନ କରେ ସେଥିରେ ଝାଳ ଅନୁପାତରେ ଯଦି ପୁଣ୍ୟ ମପାଯାଏ, ତେବେ କାହାକୁ ଲୁଚିବାକୁ ସ୍ଥାନ ମିଳିବ ନାହିଁ । ଏଣୁ ଟିକଟ କିଣିବାରେ କିଛି ଆପତ୍ତି ନ ରହିବା କଥା ।

ଟିକଟ କିଣାଯାଏ କେବଳ ଏଥିପାଇଁ ନୁହେଁ ଯେ ତାହା ନ୍ୟାୟସଙ୍ଗତ । ସେଥିରେ ପ୍ରକୃତରେ ଆଉ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଚାର ହିଁ କାମ କରିଥାଏ, ତା' ହେଲା କାହାରି କିଛି କ୍ଷତି ନକରି ମାତ୍ର ଟଙ୍କାଏ ଦେଇ ମାସକ ପାଇଁ ଲକ୍ଷେ ଟଙ୍କାର ସ୍ୱପ୍ନ କିଣିବା । ଟିକଟ ଖଣ୍ଡି ସତେ ବା ଖଣ୍ଡେ କୁହୁକ କାଠି ! ସେ

Digitized by srujanika@gmail.com

କୋଲପ ପଢ଼ ଆଲମାରିରେ ଥୁଆ ହୋଇଗଲା ପରେ ଅଦ୍ଭୁତ ଇନ୍ଦ୍ରଜାଲ ଆରମ୍ଭ ହୋଇଯାଏ । କ୍ଷେତା ଅକାରଣ ଖୁବ୍ ଉଦାର ହୋଇଯାଏ । କଥା କଥାକେ ହସେ । ଖୁବ୍ ବେପରୁଆ ଚାଲେ । ତା' ଆଖିଗୁଡ଼ାକ ଅସ୍ୱାଭାବିକ ଉଜ୍ଜ୍ୱଳ ଦେଖାଯାନ୍ତି । ଅନେକ ସମୟରେ ନିବେଳାରେ ବସି ସେ ସ୍ୱପ୍ନ-ସମୁଦ୍ରରେ ବୁଡ଼ ମହୁ ପିଉଥାଏ । ଦାରିଦ୍ର୍ୟ, ଅଭାବ ପୀଡ଼ନରେ ମନ ଯେଉଁଠି ଲୋଟି ଧରି ଯାଇଥିଲା ଠିକ୍ ସେଇଠି ଗଢ଼ି ଉଠେ ଅନେକ ଉଚ୍ଚ ମାର୍ବଲ୍‌ର ଗମ୍ବୁଜ । ସେଇଠି ଜହ୍ନ ଜମା ଚତୁର୍ଦ୍ଦଶୀ ଡେଇଁ ଓହ୍ଲାଏ ନାହିଁ । ଅଜସ୍ର ଫୁଲ ଗନ୍ଧରୁ ରଙ୍ଗ ମଉଳେ ନାହିଁ । ଘଡ଼ି ଘଡ଼ିକେ ଅଷ୍ଟବେତାଳ ଆସି ସେବାରେ ଖଟନ୍ତି, ତୋଳି ଦଅନ୍ତି ଉଆସ, ଟେକ ଆଣନ୍ତି 'ଲିମୋଜାଇନ୍' ଗାଡ଼ି—ଖାଇବାକୁ କେତେ ଜଣ ! ଶୋଇବାକୁ କାହିଁରେ କଣ !! ଓଃ, ମନରେ ଏପରି କୌଣସି କାମନା ଆଉ ରହେ ନାହିଁ, ଯାହା ଉପରେ ସ୍ୱପ୍ନର ମହୁ ମାଡ଼ି ନ ଯାଏ । କାମନା ହାରିଯାଏ, ସରିଯାଏ ଇଚ୍ଛାର ଦଉଡ଼ି । ସବୁଠାରେ କେବଳ ତୃପ୍ତିର ଆଶ୍ୱସ୍ତି—ଏକଲକ୍ଷ ଟଙ୍କା କିଛି କମ୍ ନୁହେଁ । କିଏ କହିଲା ସେଥିରେ ମାତ୍ର ପାଞ୍ଚଟା ଶୂନ ? —ସେଥିରେ ତ' ଶୂନ୍ୟ ଗଣତି କରିହୁଏ ନାହିଁ ! ଚାଲ ଚାଲ ମୋଡ଼ି ପରି ଦିଗ୍‌ବଳୟ ଯାଏ କେତେ ଯେ ଶୂନ୍ୟ ତା' କଣ କିଏ ଗଣେ, ନା ଗଣିବାକୁ ବେଳ ପାଏ ?

କିନ୍ତୁ ସେଥିରେ ଶୂନ୍ୟ ମାତ୍ର ପାଞ୍ଚଟି, ଅତି ନିର୍ଦ୍ଦିଷ୍ଟ ଭାବରେ ପାଞ୍ଚଟି । ପାଖରେ ବସି ଖୁବ୍ ହିସାବୀ ଗୃହପତ୍ନୀ ଆଙ୍ଗୁଠି ଗଣି ଦେଖେଇ ଦଅନ୍ତି । କହନ୍ତି, ଆଜିକାଲି ଲକ୍ଷେ ଟଙ୍କାରେ କ'ଣଟା ହେବ ଯେ ? ଘର ଖଣ୍ଡେ ତ ମନଲାଗି କଲେ ତିନିଲକ୍ଷ, ତେଣିକି ଆଉରି ବାକିସବୁ ଅଛି ।···କିଛି ନିଶା କଟିଯାଏ । ନିଶା କଟିଗଲେ ଗଣିତ ବୁଦ୍ଧି ପ୍ରଖର ହୋଇଯାଏ । ଚାଲେ ହିସାବ, ଆଗ ଦାରିଦ୍ର୍ୟର ଖାଲ ଖଣା ଭର୍ତ୍ତିକରି ଘରର ସମସ୍ତଙ୍କର ସୁସ୍ଥ ଗ୍ରାସାଚ୍ଛାଦନ କରୁ କରୁ ଚାଲିଯାଏ ଅଧେ । ବାକି ଅଧକେ ନାରାୟଣବାବୁ, ଗୋପୀବାବୁ, ଆଚାର୍ଯ୍ୟବାବୁଙ୍କ ଘରଭଳି ଖଣ୍ଡେ ମଧ ତୋଳି ହୋଇଯାଏ । ବେଶ୍ ସବୁ କ୍ଷୁଧାକୁ ଫଳେ ପୁରିଷ୍ଟ ମେଣ୍ଟେଇ ଦେଇ କିଛି ସମୟ ମସଗୁଲ୍ ହୋଇ ବସିଲା ପରେ ଆଖିରୁ ସ୍ୱପ୍ନ ଓହ୍ଲେଇ ଯାଏ, ତେଜ ଅପସରି ଯାଏ । ମେଲା ଦେହରେ ଘୁଅଳିଆ ବୁଲୁଥିବାର ଦେଖାଯାଆନ୍ତି । ସାଧାରଣତଃ ହିନବେଳେ ସବୁ ସ୍ୱପ୍ନ କାଚ ଘଡ଼ି ପରି ଏଇଠି ଚିର ହୋଇଯିବା କଥା, ଯେମିତି ଗଉଡ଼ୁଣୀର ମୁଣ୍ଡରୁ ଦୁଧହାଣ୍ଡି ଖସି ପଡ଼ୁଥିଲା ।

Digitized by srujanika@gmail.com

କିନ୍ତୁ ଏହାର ବିଶେଷତ୍ୱ ହେଲା ଯେ, ଏହା ମୋଟେ ଭାଙ୍ଗେ ନାହିଁ ବରଂ ଅଭାବର ବିକଟ ରୂପକୁ ଘୃଣାଆଡ଼େ 'ଗୃହିଁ' ନିଶ ମୋଡ଼େ । କହୁଥାଏ ଯେମିତି—"ରହ, ତତେ ମୁଁ ଅଳବତ୍ କାବୁ କରିବି । ଆହୁରି ଅଣତିରିଶ ଦିନ ସମ୍ଭାଳି ଥା । ଯେଉଁଦିନ କାଗଜରେ ବାହାରିଯିବ ଯେ···" ତା'ପରେ ପୁଣି ଭୁହାଏ ସ୍ୱପ୍ନର ଜୁଆର ।

କାନ୍ଧରେ ଘୋର ଦାୟିତ୍ୱର ଯୁଆଳି କାଟେ ନାହିଁ । ଭୋକ ଉପାସ ବାଧେ ନାହିଁ । ସବୁ ଯାତନାରୁ ଯେମିତି ଦାଉ ମରିଯାଇଛି । ବରଂ ଦାନ କରିବାକୁ ମନ ହୁଏ । ଦୟା କରିବାକୁ ମନ ହୁଏ । ଦୁଆରୁ ଭିକାରିକୁ ଆଉ ଖିଙ୍କାରି ଘଉଡ଼ି ଦେବାକୁ ପ୍ରବୃତ୍ତି ହୁଏ ନାହିଁ । ଦିନକୁ ଗୃହ ପାଞ୍ଚଟା କ୍ଷୁଦ୍ର ଶିଳ୍ପର ଯୋଜନା ଦୂର ପାହାଡ଼ ପରି ଆସି କୁର୍ଣ୍ଣିସ କରି ଠିଆ ହୁଅନ୍ତି । ତାଙ୍କ ଗ୍ରହପଟେ ସ୍ୱପ୍ନ ଲଟେଇ କିଛି ଫୁଲ ଫୁଟେଇ ଦିଏ । କିଛି ମେଘ ଉଇଁଆସେ । ମୟୂର ନାଚ, ତାପରେ ସେମାନେ ମିଳେଇ ଯାଆନ୍ତି । ଭୁବନେଶ୍ୱରରେ ଯାତାୟାତର ଭାରି ଅସୁବିଧା । ଦିଲ୍ଲୀ ପରି ତିନ ଚକିଆ ଅଟୋ ରିକ୍ସା ଚଳି ଗଲାନ୍ତା—ବାଃ-ଆସି-ଗଲେ ଅଟୋ ରିକ୍ସା । ଭରି ଚକ୍ ଚକ୍ ପଗଡ଼ି ଭିଡ଼ି, ଦାଢ଼ି ବାନ୍ଧି ସର୍ଦ୍ଦାର ଡ୍ରାଇଭର ସବୁ ବସିଗଲେ । ଆଖି ପିଚୁଳାକେ ଖଣ୍ଡଗିରି ଉଡ଼ିଯିବେ । ସେଠୁ ଉଡ଼ି ଆସିବେ ଶିଶୁପାଳଗଡ଼—କିଛି ସମୟ ସେମାନେ ଉଡ଼ିଲେ ମଧ୍ୟ । ପତ୍ନୀ ଆଣି ହାତରେ ବଜାରମୁଣା ଗୁଞ୍ଜିଦେଲାବେଳେ ସବୁ କୁଆଡ଼େ ପୁଣି ମିଳାଇଗଲେ । ଯେମିତି କେତେ ହୋଟେଲ, ଦାଉ ଦାଉ ହୋଇ ଜଳି ଉଠିଛନ୍ତି, ଫାକ୍ଟେରୀ ଘୂରିଛନ୍ତି, ଛାପାଖାନା ଗୃଲିଛନ୍ତି, ଲଣ୍ଡ୍ରିରେ ଅଦ୍‌ଭୁତ ଆଧୁନିକ କଳ କାମ କରିଛନ୍ତି । ମଝିରେ ମଝିରେ ଖାଲି କୋଲପ ଫିଟେଇ ଟିକିଟ ଖଣ୍ଡ ହି ଗ୍ରହଥର ଏପଟ ସେପଟ ଦେଖି ଥୋଇଦେଲେ ପୁଣି ପ୍ରତ୍ୟୟ ଆସିଯାଏ । ଗୃଲେ ସ୍ୱପ୍ନର ବଣିଜ ।

ଦିନ ଯେତେ ନିକଟ ହୋଇଆସେ ସେଇ ପରିମାଣରେ ବଢ଼ି ଗୃଲେ ମନରେ ଉଚ୍ଛାଟ । ସତେ କଣ ମିଳିବ ? ନ ମିଳିବ କାହିଁକି ? ଏମିତି ତ ଜଣେ ପାଉଥିବ ନା ନାହିଁ ? ମନେ ଅଛି ଯେଉଁଦିନ ଅଫିସ ପିଅନ୍ 'କୁଶା' ନାଁରେ ଟେଲିଗ୍ରାମ ଗୃଲି ଆସିଲା, ଅଫିସର ସାଇବ ଲଗାଡ଼ି ସମସ୍ତେ ଆସି କୁଶାକୁ ବେଢ଼ି ଗଲେ । ଆଗଭଳି କେହି ଆଉ ଭରସି ତାକୁ କଥା କହି ପାରୁନଥାନ୍ତି । କୁଶା ମଧ୍ୟ କାଲୁଆ ହୋଇ ଯାଇଥାଏ । ତା ଆଖିକୁ ଘୁମ ମାଡ଼ିଆସୁଥାଏ । ଅଗ୍ରନକ ଲକ୍ଷେ ଟଙ୍କା

Digitized by srujanika@gmail.com

ମଡ଼େଇ ହୋଇ ପଡ଼ିଲେ ତାକୁ ସମ୍ଭାଳିବା ଭଳି ଦମ୍ଭ ସମସ୍ତଙ୍କର ନାହିଁ। ଆକାଶକୁ ଯେ ଜଟା ମେଲିଛି, ସେ ହିଁ ଏ ଗଙ୍ଗାଧାରକୁ ଧାରଣ କରିବ । ନ ହେଲେ ଭାଙ୍ଗି ପଡ଼ିବ ।

ଏତେ ତ ଯୋଜନା ହେଉଛି । ମନେ ମନେ ଲକ୍ଷେ ଥର ସେ ଲକ୍ଷେ ଟଙ୍କାକୁ ବିନିଯୋଗ କରିସାରିଛି । ନ ହେଲାବେଳକୁ ବେଙ୍କ୍‌ରେ ଜମା କରିଦେଲେ ଖାଲି କଲନ୍ତର ମାସକୁ ହଜାରେ । ମୂଳଧନରୁ ପଇସାଟିଏ ଖର୍ଚ୍ଚ ନାହିଁ । ଯେଉଁ ଲକ୍ଷ-ପତିକୁ ସେଇ ଲକ୍ଷପତି ସବୁଦିନ । ମନ୍ଦ କଣ ? ସ୍ୱପ୍ନରେ ଗହଳି ସହି ହୁଏ ନାହିଁ; ପ୍ରବଳ କ୍ଷିପ୍ରତା ସହି ହୁଏନାହିଁ । ଭାରି କ୍ଳାନ୍ତ ଲାଗେ । ମଥା ଟଣ୍ ଟଣ୍ କରେ । ପାଞ୍ଚମିନିଟରେ ପାଞ୍ଚଟା ଲକ୍ଷଟଙ୍କିଆ ଯୋଜନାକୁ ତୁଳେଇବା କ'ଣ ସହଜ ପଡ଼ୁଛି ?

ଦିନ ଆହୁରି ନିକଟ ହୋଇଯାଏ । ସ୍ୱପ୍ନ ଗୁଣି ହୋଇଯାଏ । ସବୁଠୁ ସୁନ୍ଦର କେତୋଟି ମନମତାଣିଆ ଯୋଜନା ବାରମ୍ବାର ଆସି ଅଧିକାର ଜମେଇବସନ୍ତି । ଶେଷକୁ ଯାହା ରହିଯାଏ, ତା ଭୋଜ ଶେଷରେ ପାୟସାନ୍ନ ପରି । ଆଖିବୁଜି ତାକୁ ଖାଲି ଲେମେ ଲେମେ ଶୋଷିଯିବା କଥା । ସବୁ ଭାଗ୍ୟ କଥା ତ ! ଭାଗ୍ୟ ମାନେ ତ ଗ୍ରହସ୍ଥିତି । ତତ୍‌କ୍ଷଣାତ୍ ଗ୍ରହାଚାର୍ଯ୍ୟଙ୍କ ପାଖରେ ବସି ତାଙ୍କୁ ଟଙ୍କା ପଇସା ଉତ୍କୋଚ ଦେଇ କୌଣସି ପ୍ରକାରେ ଇଚ୍ଛା ଅନୁସାରେ ଗଣନାଫଳ ଶୁଣାଯାଏ । ଧନାଧିପତି ଅଷ୍ଟମରେ, ବୃହସ୍ପତି ମହାଦଶାବେଳକୁ ଶନିର ଅନ୍ତର ଚାଲିଛି ଓ ଲଗ୍ନରେ ବୃହସ୍ପତି ଅତି ଉଚ୍ଚ । ଏମାନଙ୍କୁ ଚାହିଁ ପଞ୍ଚମାଧିପତି ରବି ଓ ଦ୍ୱିତୀୟାଧିପତି ଶୁକ୍ର ଏପରି ରାଜଯୋଟକରେ ହାତ ବଢ଼େଇଲେ ଟଙ୍କା ଅଜାଡ଼ି ହୋଇଯିବା କଥା । ମୁହୂର୍ତ୍ତେ ମୁହୂର୍ତ୍ତେ ଧନପ୍ରାପ୍ତିର ସ୍ୱପ୍ନ । ଅଗ୍ନିରେ ଇନ୍ଧନ ପଡ଼ିଯାଏ ଏବଂ ବଢ଼ି ଚାଲେ ଯୋଜନାର ଶିଖା ।

ମନରେ ସ୍ୱପ୍ନ ଘନୀଭୂତ ହୋଇଯାଏ । ଏଥର ଆଉ ପ୍ରଥମ ପୁରସ୍କାର ଫିଟି ନଯିବା କଥା । ଅଣତିରିଶ ଦିନ ପର୍ଯ୍ୟନ୍ତ ପ୍ରତି ମୁହୂର୍ତ୍ତରେ ଲକ୍ଷପତିର ଐଶ୍ୱର୍ଯ୍ୟ ଭୋଗକରି ବହୁ କାମନା ପରିତୃପ୍ତ ହୋଇପାରେ । ଏହା ଛଳନା । କିନ୍ତୁ ଛଳନାର ଅଦ୍ଭୁତ ବ୍ୟାପ୍ତି, ଅପରିମେୟ ବିଭୂତି ଏଥିରେ ପ୍ରକଟିତ ହୁଏ । ଏପରି ଐଶ୍ୱର୍ଯ୍ୟରେ ଶାସ୍ତ୍ର କହୁଛି ଈଶ୍ୱରଙ୍କ ଭାବ ହିଁ ପ୍ରକାଶିତ ହୋଇଥାଏ । ଯଦି ଜଣେ ସତକୁ ସତ ଲକ୍ଷେ ପାଇଗଲା, ତେବେ ସମସ୍ୟା ଅର୍ଥନୀତି ବାହାରକୁ ଆସିଗଲା । ତାହା ତା'ର ସ୍ୱୋପାର୍ଜିତ ନା ନୁହେଁ, ସେଥିରେ ସେ ସମାଜବାଦର ପ୍ରତିଷ୍ଠା କଲା

Digitized by srujanika@gmail.com

ନା ପୁଞ୍ଜିବାଦର, ତାକୁ ସେଥିପାଇଁ ଜେଲ୍‌ଦଣ୍ଡ ଦେଲେ ଚଳିବ ନା ପ୍ରାଣଦଣ୍ଡ ଅନିବାର୍ଯ୍ୟ, ନା ତା'ର ପୈତୃକ ସମ୍ପତ୍ତି ପରି ଏ ଅର୍ଥକୁ ମଧ୍ୟ ସେ ନିର୍ବିରୋଧ ଭୋଗ କରିବାକୁ ସ୍ୱାଧୀନତା ପାଇବା ଉଚିତ—ଏହିପରି ନାନା ଜଟିଳ ପ୍ରଶ୍ନ ଆସି ପହଞ୍ଚିଯିବେ ।

ତା'ଆଖିରୁ ସ୍ୱପ୍ନ ଭାଙ୍ଗି ନଥିବ, ଏପରି ଅବସ୍ଥାରେ ସେ ଲକ୍ଷେ ଟଙ୍କାର ଅଧିକାର ପାଇଲେ ତାକୁ ପୁଣି ହୁଏତ ବ୍ୟାଙ୍କରେ ଜମା କରିଦେବ ଏବଂ ଟିକଟ କାଗଜ ପରିବର୍ତ୍ତେ ଖଣ୍ଡେ ପାସ୍ ବହିର କାଗଜକୁ ଦେଖି ସ୍ୱପ୍ନ ଗଢ଼ିବ । ତଫାତ୍ ଖୁବ୍ କମ୍ । ଐଶ୍ୱର୍ଯ୍ୟର ସମ୍ଭାବନାରେ ହିଁ କୋଟିପତିର ସ୍ୱପ୍ନ । ଯଦି ଏତେ ସ୍ୱପ୍ନ ମିଳୁଛି, ତେବେ ଅନ୍ତତଃ ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ଖଣ୍ଡେ ଟିକଟ କିଣି କଷ୍ଟାର୍ଜିତ ବନ୍ଧ୍ୟ ଯନ୍ତ୍ରଣାର କାଳ୍ପନିକ ଉପଶମ ଯୋଗେଇ ଦେଇ ପାରିଲେ କ'ଣ ଖୁବ୍ ଗର୍ହିତ ଅନ୍ୟାୟ ହୋଇଯିବ ବୋଲି ଭାବୁଛନ୍ତି ?

---

Digitized by srujanika@gmail.com

# କବିପତ୍ନୀ

ଗୋଟିଏ ଡେମ୍ଫରେ ଦୁଇଟି ଫୁଲ ଫୁଟିଲା ପରି ଯୌବନ ମୁକୁଳି ଆସିଲା-ବେଳକୁ ଜୀବନର ଖୁବ୍ ଗହ୍ୱରରୁ ଗଜେଇ ଆସନ୍ତି କବିତା ଓ ପ୍ରେମ । ସେ ଦୁହେଁ ଯାଆଁଳା । ଗୋଟିକୁ ଛୁଇଁଲେ ଆରଟି ଝରଝର କାନ୍ଦିପକାଏ । ଗୋଟିଏ ଦୋହଲିଲେ ଆରଟି ସୁର ତୋଳି ଗୀତ ଗାଏ । ଦୁହେଁ ହାତ ଧରାଧରି ହୋଇ ସେମିତି ମତାଣିଆ ବେଳ ପଡ଼ିଲେ ଉଲୁସିଉଠନ୍ତି । କବିତାଟି ପଢ଼ିଲେ ଭୂଇଁତଳ ଚେରଗୁଡ଼ିକ ଚହଲିଯାଆନ୍ତି । ଆଖି ଜକେଇଯାଏ । କବିତାଟିକୁ କୁଣ୍ଢେଇ ଚୋକ ଦେବାକୁ ଇଚ୍ଛା ହୁଏ । ଏଣୁ ଯଦି ସେମିତି ବୀଣାତାର ଭଳି ଟିପ ବାଜିଲେ କମ୍ପି ଉଠୁଥିବା ତରୁଣୀ ସେଭଳି କବିତାଟିଏ ପଢ଼ନ୍ତି, ତେବେ ସେହି କବିଙ୍କର ପତ୍ନୀ ହେବା ପାଇଁ ସେ ଉତଳା ହୋଇ ଉଠିବା କିଛି ଅସ୍ୱାଭାବିକ ନୁହେଁ । ସବୁବେଳେ କ'ଣ ଦାନ୍ତ, ଆଖି, ଚମ ଦେଖି ପ୍ରେମ କରାଯାଏ ? କବିତା ଭିତରେ ଯେଉଁ ଆତ୍ମାଟି ଗୁଞ୍ଜରୁଥାଏ ଏବଂ ସେଥିପାଇଁ କବିତାର ପାଖୁଡ଼ାଗୁଡ଼ିକ ଲହଡି ତୋଳୁଥାନ୍ତି, ତାକୁ ପ୍ରେମ କରିବା ବ୍ୟବସାୟୀ ଦୃଷ୍ଟିରୁ ହୁଏତ ଅସତର୍କତା; କିନ୍ତୁ ସତର୍କ ରହି ତ ପ୍ରେମ କରାଯାଏ ନାହିଁ, ବରଂ ବଣିଜ କରାଯାଏ । ଚାରିଆଡ଼ୁ ଗଣ୍ଠି ପକେଇ ଛନ୍ଦି ବାନ୍ଧି ଗୋଟାଏ ପ୍ରକାର ପ୍ରେମ ବେଉସା ଆମେ କରିଥାଉ । ଏଣୁ ବୋଧହୁଏ ସାଧାରଣ ଜୀବନରେ ଅନୁଭବ କଲାଭଳି ପ୍ରେମ ଆସେ ନାହିଁ । ସବୁ ଗଣ୍ଠି ହୁଗୁଳା ଦେଇ, ଖୋଲା, ବେପରୁଆ, ଚାରିକାତ ମେଲେଇ ସ୍ରୋତରେ ନିଜକୁ ଭସେଇ ଦେଲା ଭଳି ପ୍ରେମ ଆମେ କରି ପାରୁନା; ସେମିତି ସାହସ ଆମର ନାହିଁ, ସେତିକି ଉଦାରତା ନାହିଁ, ବିଶ୍ୱାସ ମଧ୍ୟ ନାହିଁ ।

ପ୍ରାୟ ଏହିଭଳି ଯୁକ୍ତିରେ ବିଶ୍ୱାସ କରୁଥିବା ତରୁଣୀ କବିତା ପଢ଼ି ଦେଇ କବିଙ୍କର ପତ୍ନୀ ହୋଇଯା'ନ୍ତି । ନାନ୍ଦୀ, ସୂତ୍ରଧର ଏବଂ ପୁରୋହିତାଦିଙ୍କର କୋଳାହଳ ପରେ ସେ ପ୍ରଥମେ ଯେତେବେଳେ କବିଙ୍କୁ ମୁହଁ ତୋଳି ଚାହାଁନ୍ତି, ଗୋଟାଏ ନିଆଁ ହୁଳା ତାଙ୍କରୁ ତଳିପା ଯାଏ ଖସିଯାଏ । ଆଖି ନଇଁ ଆସେ, ବୁକୁରେ ପବନ

Digitized by srujanika@gmail.com

ଫୁଲଉଠେ । କଣୁଆ ଝୁରଝୁରିଆ ମଣିଷଟିଏ, ଭିତରକୁ ଓହରି ଯାଇଥିବା ଗାଲ୍ ଯୋଡ଼ିକ, ଖୋକଲ୍ ଆଖି ଯୋଡ଼ିକ ବନ୍ଧୁ ଗାତରେ ଉନ୍ନିଦ୍ର ରହୁଥିବା ଦୁଇଟି କ୍ଲାନ୍ତ ପ୍ରହରୀ । ସେଇ ସୁକୁମାର ଦେବଶିଶୁଟି ତେବେ କାହିଁ, ଯାହାର ମୁକ୍ତାଫଳ ପରି ଆଖିଧାରରେ ଅସଂଖ୍ୟ ସ୍ୱପ୍ନ ?—କବିତାର ଝର୍କା ବାଟେ ଯାହାର ରୂପ ଦେଖି ସେ ବିମୁଗ୍ଧ ହୋଇଥିଲେ ? ବୁକୁରେ ଫୁଲଉଠୁଥିବା ପବନକୁ ଆଉ ରୋକି ହୁଏ ନାହିଁ । ବୈଶାଖୀ ଝାଞ୍ଜି ଖୁବ୍ ଲମ୍ବା ସୁରଟିଏ ଧରି ବୋହିଯାଏ ।

ପ୍ରସ୍ତ ପ୍ରସ୍ତ ହୋଇ ତା'ପରେ କିନ୍ତୁ ଖୋଳପା ବାନ୍ଧିଆସେ । ଆଖିରେ ଆତ୍ମୀୟତାର ଅଞ୍ଜନ ମାଡ଼ିଯାଏ । ଏଇ ସୁର୍ମା ଧାରେ ଲେଖା ଲଗେଇ ଅନେଇଲେ ସବୁ ଦିଶେ ସୁନ୍ଦର । କବି ବେଳେବେଳେ ଝାପ୍ସା ଧୂପ ଆଲୁଅରେ ସେଇ ଦେବଶିଶୁ ପରି ଦିଶିଯାନ୍ତି । ଆଖି, ଗାଲ୍, ଦେହେଟାକୁ ଏଭଳି ଏକ ରଙ୍ଗ ମଡ଼େଇ ଦେଲେ ମନ୍ଦ ଦିଶେ ନାହିଁ । ବେଶ୍ କିଛି କିଛି ପ୍ରେମ କରି ବସନ୍ତି କବିପତ୍ନୀ । ହି'ଗୃହିଣୀ କ'ଣ କବିତା ମଧ ବିଭୋର ହୋଇ ଶୁଣନ୍ତି । କିନ୍ତୁ ବେଶି ଦିନ ନୁହେଁ, ଯଦି କେବଳ କବିତା ଗ୍ରେବେଇଲେ ପେଟ ପୂରି ଯାଉଥାନ୍ତା, ତେବେ କବିପତ୍ନୀଙ୍କୁ କିଛି ଅସୁବିଧା ନ ଥିଲା । ଅନ୍ନବସ୍ତ୍ର କଷ୍ଟ ଯେତେବେଳେ ବେଶି ବାଧେ ଓ ସେ ଆସି ଝାଡ଼ ଦେଇ ଯାଆନ୍ତି, ଅଭିଯୋଗରେ ଦବି ଯାଉଥିବା ଗଳାରେ କବି କେବଳ ହସିଦିଅନ୍ତି । ସତେ ବା ଡାଲି ଚାଉଳ ଓ ହଂସଡିମ୍ବ, ସବୁ ଅବାନ୍ତର, ଅସମୀଚୀନ, ଅଶ୍ଳୀଳ ଶବ୍ଦଗୁଡ଼ିଏ ।

ସଂସାର ଚଳେଇବାକୁ କବିଙ୍କର ଯୋଗ୍ୟତା ମୋଟେ ନ ଥାଏ । ସଂସାର କିନ୍ତୁ ଅନିବାର୍ଯ୍ୟ ଭାବରେ ତାଙ୍କୁ ଗୃହିଆଡ଼ୁ ଘେରିଆସେ । କବିପତ୍ନୀ ନିଜେ ଘେରି ଆସନ୍ତି । ତାଙ୍କ ବାହୁ ବେଢ଼ା ଭିତରେ ଥିବା କବିଟିକୁ ସେ କିଆରେ ଟିକି ଟିକି କରି ବୁଣିଦେବା ପୂର୍ବରୁ ମୁହୂର୍ତ୍ତେ ଦ୍ୱନ୍ଦ୍ୱରେ ପଡ଼ିଯାନ୍ତି । ଡାଲି, ଚାଉଳ ଓ ହଂସ ଡିମ୍ବର ଫସଲ ବାସ୍ତବିକ ଭାରି ଲୋଭନୀୟ । କିନ୍ତୁ କବିଟିକୁ ନିଃଶେଷ କରି ଅଜାଡ଼ିଦେବାକୁ ତାଙ୍କ ହାତ ଯାଏ ନାହିଁ ।

ଯେଉଁମାନେ କିନ୍ତୁ ଅଜାଡ଼ି ଦିଅନ୍ତି, ତାଙ୍କ ସଂଖ୍ୟା ଶହେରେ ଅନେଶତ । ସେଇ ରମା, ଶାମା, ଦାମା ମା'ଗୁଡ଼ିକ କବିତା ନ ପଢ଼ି କବିଟିକୁ ଅକସ୍ମାତ ପତି ରୂପେ ପାଇଥାନ୍ତି । ସେମାନେ ବାରି ପାରନ୍ତି ନାହିଁ ଯେ, ଯାହାକୁ ସେମାନେ ନିଜ ପାଇଁ ଏବଂ ତାଙ୍କ ସ୍ନେହର ରମା, ଶାମା, ଦାମା ପାଇଁ ଖର୍ଚ୍ଚ କରିଦିଅନ୍ତି, ସେ ବିଗୃହି ସେଥିକୁ ପାରିବାର ନୁହେଁ । ସଂସାରର ଝାଞ୍ଜି ଓ ପତ୍ନୀଙ୍କ ନିଃଶ୍ୱାସରେ ଯେତେ-

Digitized by srujanika@gmail.com

ବେଳେ ପାପ ଲିଭିଆସେ, ଛେଳିଗୁଣ୍ଡି ପରିବାର ବୋବାଳି ଗୁଡ଼ି ଡାକୁଥିଲା ବେଳେ ଯୋଡ଼ିଏ ଅପଲକ ଆଖି ଶୂନ୍ୟକୁ ଅନେଇ ରହିଯାଏ । ଯୋଡ଼ିଏ ନୀରବ କବିତା ବର୍ଣ୍ଣମାଳାର ସ୍ୱର ଏବଂ ଛନ୍ଦ ଭିତରକୁ ଆସି ନ ପାରି ବାହୁଡ଼ିଯାଆନ୍ତି । ଦରିଦ୍ର ପୃଥିବୀ ଦରିଦ୍ର ରହିଯାଏ । ଋମା, ଶାମା, ଦାମା ଓ ସେମାନଙ୍କ ମା'ମାନେ ଝାଡ଼ଝୁଡ଼ ହୋଇ ବିଲମାଳରୁ ଫସଲ ଉଠାଣି ପରେ ଧାନ ଶିଁଷା ଗୋଟାନ୍ତି । କିନ୍ତୁ ଶହେରେ ଯେଉଁ ଜଣକ ଏ ପର୍ଯ୍ୟାୟରେ ପଡ଼ନ୍ତି ନାହିଁ ସେଇ ମହୀୟସୀ କବିପତ୍ନୀଙ୍କର କଥା ଏଠି ପଡ଼ୁଛି ଏବଂ ସେ ତାଙ୍କର କବିତାଟିକୁ ସେମିତି ବିସର୍ଜି ଦେଇ ପାରନ୍ତି ନାହିଁ ।

ଫଳରେ ସରକାରୀ ସ୍କୁଲରେ ଦଶଟାରୁ ଚାରିଟା ସେ ପିଲାଙ୍କୁ ପଢ଼ାନ୍ତି, ଆସିଲା-ବେଳକୁ ଯୋଡ଼ିଏ ସେଓ ଆଣିଥାନ୍ତି । ସାଧାରଣ ଲୋକ କ'ଣ ଠିକଏ ସାଧାରଣ ଚିନ୍ତା କରେ ବୋଲି ମସ୍ତିଷ୍କର ଅସଂଖ୍ୟ ତନ୍ତୁ ଛିଣ୍ଡିଯାଏ ! କବିତା ଲେଖିବା କଣ୍ଢେଇ ଖେଳ ଘର ନୁହେଁ ଏବଂ ସେଓ ଅଙ୍ଗୁର କ୍ଷୀର ଠିକଏ ନ ହେଲେ କବିଟିର ସୁକୁମାର ଗୋଲାପ ଡାଳରେ କଅଁଳ ପତ୍ର ମେଲିବ ନାହିଁ କି କଢ଼ ଫୁଟିବ ନାହିଁ । ଖାଲି ସେତିକି ନୁହେଁ । କବି ବସିବା ଭଙ୍ଗୀ ଉପରେ ପ୍ରେରଣାର ଧାରା ନିର୍ଭର କରେ । ଗୋଟାଏ ଆଠ ଅଙ୍କି କାଠ ଚୌକିରେ ଖୁଣ୍ଟପରି ବସି ସେମିତି ଟାଣୁଆ ଲୋକ ହୋଇଥିଲେ ପ୍ରବନ୍ଧ ଲେଖିପାରେ; କିନ୍ତୁ କବିତାର ସରୁ ଧାର ସେଇ ଅଷ୍ଟାଭଙ୍ଗ ପାଖରେ ଲାଗିଯିବ, ଆଉ ଉପରକୁ ଆସିବା ସହଜ ନୁହେଁ । ଏଣୁ ଆରାମ ଚୌକିଟିଏ ନିହାତି ଲୋଡ଼ା । କ୍ରମଶଃ ବକ୍ର ଅଙ୍ଗରେଖାରେ ସହଜରେ କବିତା ବହୁଳିଆ ମାଡ଼ି ଆସିପାରେ । ପୃଥିବୀର ମେରୁଦଣ୍ଡ ପରି କବିଙ୍କ ମେରୁଦଣ୍ଡ ମଧ୍ୟ ଭୂମି ସହିତ ସାଢ଼େ ତେଇଶ ଡିଗ୍ରୀ ଅଙ୍କନ କରିବା ହେଲା ସବୁଠାରୁ ଶ୍ରେଷ୍ଠ ଅବସ୍ଥା ।

କବି ସୌନ୍ଦର୍ଯ୍ୟର ଉପାସକ । ଏଣୁ ବହୁ ଶ୍ରମ ସ୍ୱୀକାର କରି ଫୁଲଗଛ ଲଗାହୁଏ । ରଙ୍ଗୀନ ପର୍ଦ୍ଦା ଝୁଲେ ଏବଂ କବିପତ୍ନୀ ଅନେକ ଯତ୍ନରେ ନିଜର ପ୍ରସାଧନ କରନ୍ତି । ସୂର୍ଯ୍ୟଙ୍କୁ ନିଜର ପ୍ରତିଦ୍ୱନ୍ଦ୍ୱୀ ବୋଲି କବି ସ୍ୱୀକାର କରୁ ନଥିବାରୁ ସେ ଉଠିବା ପୂର୍ବରୁ ସକାଳର ବେଶ୍ ଦୁଇଘଡ଼ି ସମୟ ମିଳିଯାଏ ସଜଡ଼ାସଜଡ଼ି ହେବାକୁ ।

ରୂପ, ରସ, ଗନ୍ଧ, ସ୍ପର୍ଶର ଜଗତକୁ ଆନନ୍ଦମୟ ସୌନ୍ଦର୍ଯ୍ୟମୟ କରି କବି ଦେଖିବାକୁ ଚାହେଁ । ଏଣୁ କବିପତ୍ନୀ ଲୁଚି ଲୁଚି ସଙ୍ଗୀତ ଶିକ୍ଷା କରିବାର ମଧ୍ୟ

Digitized by srujanika@gmail.com

ଦେଖାଯାଏ । ଚନ୍ଦ୍ର ପକ୍ଷରେ ସେତାର ବାଜେ । ନବ୍ଦୋଲା ସନ୍ଧ୍ୟାରେ ମଧୁର ସଙ୍ଗୀତ ଶୁଣନ୍ତି । କବିଙ୍କୁ ବିଭୋର କରିବାକୁ ପଡ଼ିବ । ଆତ୍ମବିସ୍ମୃତ ନହେଲେ କବିତା ସମ୍ଭବ ନୁହେଁ ।

ଏ ସବୁ ସତ୍ତ୍ୱେ କବି କେବଳ ଚଞ୍ଚଳ । ସେ ସ୍ୱପ୍ନାନ୍ତ କବିତାରୂପିଣୀ ପତ୍ନୀକୁ ନିଜଠାରୁ ଅଭିନ୍ନ ରଖିବାକୁ । କବିପତ୍ନୀ ନିଜକୁ କୃତାର୍ଥ ମଣନ୍ତି; କିନ୍ତୁ ଚିନ୍ତାମଣି ପରି ସମୟ ଜାଣି ଉପଦେଶ ଦେଇ କହନ୍ତି ଯେ, ଘର ନାରୀ ଉପରେ ସେ ଯେତେ ମୁଗ୍ଧ ବିଭୋର ରହୁଛନ୍ତି, ଯଦି ଶାଶ୍ୱତ କବିତା ଉପରେ ସେତିକି ରହି ପାରନ୍ତି କ'ଣ ନ ହୁଅନ୍ତା ? କବିପତ୍ନୀ ନିଜେ ଏହା ପରେ ଅସଂଖ୍ୟ ସମ୍ଭାବନାର ସ୍ୱପ୍ନରେ ବୁଡ଼ି ଯାଆନ୍ତି । କବି କିନ୍ତୁ କେବଳ ବେଦନ କରନ୍ତି । ତାଙ୍କ କାନ ଧରି ଅଝଟ, ଅବୁଝା ହୋଇ ତାଙ୍କୁ ଭିଡ଼ିଧରନ୍ତି ! ଓ ! ତା' ହେଲେ କବିଙ୍କୁ ଅକୃପଣ ପ୍ରେମ ହିଁ ପ୍ରୟୋଜନ ! ପ୍ରେମ ହିଁ ସୃଷ୍ଟିକୁ ଆନନ୍ଦମୟ ସୌନ୍ଦର୍ଯ୍ୟମୟ କରିଦିଏ । ପ୍ରେମ ଏବଂ କବିତା ଯାଆଁଳା ! ଗୋଟିକୁ ଛୁଇଁଲେ ଆରଟି ଝର ଝର କାନ୍ଦିପକାଏ ।

ଏଣୁ ପ୍ରେମ ହୁଏତ ଆସେ; କିନ୍ତୁ କବିତା ଆସିପାରେ ନାହିଁ । ସବିତା ଆସେ, ସଙ୍ଗୀତ ଆସେ, ଝୁନୁ, ମୁନୁ ଆସନ୍ତି । ନବ୍ଦୋଲାରେ ମୃଗବଧୂ ପରି ବୁଲୁଥିବା କବିତା ଏ ଗହଳ ଭିତରେ ପଶିପାରେ ନାହିଁ । ଦାଣ୍ଡ ଦୁଆରେ ତଟସ୍ଥ ଠିଆ ରହି ଲୁହ ଗଡ଼ାଏ । କବି ଲୁହ ଗଡ଼ାନ୍ତି; କିନ୍ତୁ ତଟସ୍ଥ ଠିଆ ନ ରହି ବାହାରିପଡ଼ନ୍ତି କବିତାକୁ ଖୋଜିବା ପାଇଁ । କବିପତ୍ନୀ ମଧ୍ୟ କବିତାକୁ ଖୋଜି ବାହାରିଥିଲେ । ଭାବିଥିଲେ ଯେ, ସେ ଆସିଲେ ବହୁ ଯଶ କୀର୍ତ୍ତି ଆସି ଅଜାଡ଼ିହେବ ଏବଂ ଇତିହାସ ଲେଖାରି କହିବ ଯେ ତାଙ୍କ ଭଳି ସହଧର୍ମିଣୀ ନ ଥିଲେ ମହାକବି ଅମଳ (ନାଁ ଧରିବା ଘରଣାପୁ ପରଂପରା ନୁହେଁ । ) ଆଦୌ ସମ୍ଭବ ହୋଇପାରି ନ ଥାନ୍ତେ । ଫଟୋ ଉଠିବ, ଲେଖା ବାହାରିବ, କେହି କ'ଣ ତାଙ୍କୁ ବାଦ୍ ଦେଇ ପାରିବେ ?

କବିତା ଖୋଜି ଖୋଜି ସେ କିନ୍ତୁ ପାଆନ୍ତି ପୁଞ୍ଜାଏ ଜଞ୍ଜାଳିଆ ଅଝଟ ଅବୁଝା ପିଲା । ତାଙ୍କ ବାପକୁ ମିଶେଇ ସେ ହୁଅନ୍ତି ପାଞ୍ଚ । ଅନ୍ଧାରରୁ କୋଇଲି ଚୁଲି ଲଗେଇଲା ବେଳେ ସେ ଭାବନ୍ତି ଯେ, ତାଙ୍କ ଜନ୍ମ ବୃଥା ହୋଇଗଲା । ନିଜେ ବରଂ ଆଉ ଦି' ଅକ୍ଷର ପଢ଼ି ଯାଇଥିଲେ କ'ଣ ବା ହୋଇଥାନ୍ତା । ସ୍ୱେ କବି ! କବିତା ବି କ'ଣ ସବୁ ଲେଖନ୍ତି । ଚମତ୍କାର ଦି' ତିନିଖଣ୍ଡ ସେବେ ଲେଖିଥିଲେ । କିନ୍ତୁ ସବୁ ମିଶେଇ ଦେଲେ ମଧ୍ୟ ସେମିତି ଯୁଗସୃଷ୍ଟି କଲାଭଳି କ'ଣ ଲେଖି ପାରୁଛନ୍ତି ?

Digitized by srujanika@gmail.com

...ପିଲା କାନ୍ଦେ, ଶୃଙ୍ଖଳ ସରିଯାଏ, ସବିତାଙ୍କୁ ଜର ହୁଏ । ଆଚ୍ଛା, ଏ କବିତା ଲେଖିବେ ବୋଲି କ'ଣ ମାଇକିନାଟିଏ ଏସବୁ ସମ୍ଭାଳିବା ଉଚିତ୍ ? କାହିଁ, ସେ ଅମୁକ ପଣ୍ଡିତ ବା ତମୁକ ମହାପାତ୍ର କ'ଣ କବି ନୁହନ୍ତି ? ସେ ତ' ଫେର୍ ଘର କଥା ସମ୍ଭାଳିଛନ୍ତି ! ହେଲ୍ ବା ଯେ' ଆମର ଖୁବ୍ ନପାରିଲ୍ । ଗ୍ରେଟିଆ, ଉଣ୍ଡୁସିଆ ଧନ୍ଦାଟିଏ କ'ଣ କଲେ ଦି' ପଇସା ଘରକୁ ଆସନ୍ତା ନାହିଁ ? କୋଇଲା ଚୁଲି କୁହୁଲେ । ଢେର୍ ଧୂଆଁ ବାହାରି ଘର ଭରି ହୋଇଯାଏ ।

ଝଗଡ଼ା ନ ଲଗିଲେ କୁଆଡ଼େ ଦାମ୍ପତ୍ୟ ଅପୂର୍ଣ୍ଣ ରହିଗଲା । ଗୋଟାଏ ମନୁଆ କବି ଘରେ ଥିଲେ, ଝଗଡ଼ା ପାଇଁ ପ୍ରୟାସ କରିବାକୁ ପଡ଼େ ନାହିଁ । କାରଣ ? —କାରଣ ଯାହା ଇଚ୍ଛା ତାହା ହୋଇପାରେ । ମାନ, ଅଭିମାନ, କାନ୍ଦକଟା ଭିତରେ ଢେରଦିନ ବିତିଯାଏ । କବି ଗୁମାନରେ କଥା କହନ୍ତି ନାହିଁ । ଦାଢ଼ି କାଟନ୍ତି ନାହିଁ । କବିପତ୍ନୀ ପିଲାଙ୍କୁ ନେଇ ବାପଘର ଚାଲିଯାଆନ୍ତି । ମୂଳ ମଞ୍ଜୀ କିନ୍ତୁ ଖୁବ୍ ଗମ୍ଭୀରରେ ଲୁଚିଥାଏ । କବିତା ଖୋଜିବା ଆଳରେ କବି ଯାଇ ପଶନ୍ତି ଅମୁକଙ୍କ ଘରେ; କାରଣ ତାଙ୍କ ପତ୍ନୀ ସୁରସିକା, ତାଙ୍କ ରୁଚି ଚମତ୍କାର, ସେ ଦିଶନ୍ତି ତା'ଠୁ ଆହୁରି ଚମତ୍କାର । ପହଞ୍ଚନ୍ତି ସମୁକଙ୍କ ଘରେ; କାରଣ ସେଇଠି ଯେଉଁ ଲମ୍ବା ଝିଅଟି ରହେ ସେ ଲେଖାରେ କବିଙ୍କ ଶାଳୀ ହୋଇପାରେ ! ଫେରନ୍ତି ରାତିରେ ଖୁବ୍ ବିଳମ୍ବରେ । କବି ଏହିପରି କାହାକୁ ପ୍ରକୃତରେ ଖୋଜନ୍ତି କହିବା କଠିନ । ବୋଧହୁଏ କବିତାକୁ ହିଁ ଖୋଜନ୍ତି ଏବଂ ଘରେ ଆସି ଚୋରେ ଧରା ହୁଏ । କବି ଚିତ୍କାର କରନ୍ତି, ତା'ଠୁ ଆହୁରି ଚିତ୍କାର କରନ୍ତି କବିପତ୍ନୀ । ପିଲାଏ ଚହିଁକ-ଚହିଁକ ବୋବାଳି ଛାଡ଼ନ୍ତି । ହୋଇଯାଏ ଗୋଟାଏ ବେଶ୍ ଭୋକ ଉପାସ, ପାଟିଭୁଣ୍ଡ, ରାଗ ରୋଷର ପର୍ବ ।

ଅଧିରାତିରେ କେତେଦିନ କବିତା ଲେଖାହୁଏ, କବି ଗୁମାସ୍ତା ଚାକିରି କରନ୍ତି । କବିପତ୍ନୀ ଧୈର୍ଯ୍ୟରଖି ମନସ୍ତତ୍ତ୍ୱ ପଢ଼ନ୍ତି । କବି ଏକ ମନସ୍ତାତ୍ତ୍ୱିକ ପ୍ରାଣୀ, କବିତା ଏକ ମନସ୍ତାତ୍ତ୍ୱିକ ଘଟଣା । କବି ଆଣି ପଢ଼ନ୍ତି ସାର୍ତ୍ରେ, କର୍କେଗାର୍ଡ଼ ! ସୁଅ ଅନେକ ଗମ୍ଭୀରରେ ପାଣି କାଟେ । ପିଲାଏ ପାଠ ପଢ଼ନ୍ତି, ସ୍କୁଲ୍‌କୁ ଯାଆନ୍ତି । ନବେଳାରେ ଦିନେ ଖୁବ୍ ସଯତ୍ନ ପାକଳ ଦୁଇଟି ପ୍ରାଣୀ ପରସ୍ପରଙ୍କୁ ଅନେକ ସମୟ ଅନେଇ ରହନ୍ତି । ପୁଣି ଥରେ ପ୍ରେମର ସଞ୍ଚାର ହୁଏ । ଅବଶ୍ୟ ନିଶୁଆ ଝୁରିଝୁରିଆ ମଣିଷଟି ଯୁଆଁ ଭିତରେ ଆଉରି ଝୁରିଝୁରିଆ ହୋଇ ଯାଇଥାଏ ଏବଂ ସାଣାଡାର

Digitized by srujanika@gmail.com

ପରି କବିପତ୍ନୀ ଦାୟିତ୍ୱରେ କଳାକାଠ ପଡ଼ି ଯାଇଥିଲେ ସୁଦ୍ଧା ଆଉରି ଗୁହିଁ ଗୁହିଁଆ ହୋଇ ଯାଇଥାନ୍ତି ।

ଇତସ୍ତତଃ ପଡ଼ିଥିବା କବିତାଗୁଡ଼ିକୁ ଗୋଟେଇ ଏକାଠି କରାଯାଏ । ସଂକଳନ ଛପା ହେବ । ରାଜଦରବାରରେ ଚିରକାଳ କବି ଉପହାର ପାଇ ଆସିଛନ୍ତି । ଏବେ ମଧ୍ୟ ସେଇଭଳି ବେଶ୍ ପରିପାଟୀ ହୋଇ ସେ କବିତା ଗୁଚ୍ଛଟିକୁ ନେଇ ଦରବାରକୁ ଯାଆନ୍ତି । ଏଣେ ଘରେ ଆଶା, ଉତ୍କଣ୍ଠା, ଉଦ୍‌ବେଗ ଘର ଉଛୁଳେଇ ଦୁଆର ବନ୍ଧରେ ଲହଡ଼ି ଖେଳୁଥାଏ । ଏଇଥର ରତ୍ନଭଣ୍ଡାର ନିଶ୍ଚୟ ଟେକି ଆଣିବେ । କବି କିନ୍ତୁ ଫେରନ୍ତି ଆଖି ପର୍ଯ୍ୟନ୍ତ ସ୍ୱପ୍ନରେ ବୋଝେଇ ହୋଇ । ପରମ ଉତ୍ସାହରେ ଗୋଟିଏ ଗେଣ୍ଡୁମାଳ ପତ୍ନୀଙ୍କ ବେକରେ ପକେଇ ଦେଇ ବୀରେଶ୍ୱର ହୋଇ ଠିଆ ରହନ୍ତି—'ରାଜକଣ୍ଠେର ମାଳ'—କବିପତ୍ନୀ ସନ୍ତର୍ପଣରେ ଛୁଇଁ ଦେଖନ୍ତି ଯେ ସେଗୁଡ଼ାକ ସୁନା ନୁହେଁ···କିନ୍ତୁ ତଥାପି କବିଙ୍କର ମନ ଭାଙ୍ଗିଯିବା ଭୟରେ ଉତ୍ସବ ମନାଯାଏ । ପିଲାଏ ମିଠା ଖାଇ ଡିଅଁନ୍ତି ।

'ତା'ହେଲେ ହେଲା ନାହିଁ,' ଭାବନ୍ତି କବିପତ୍ନୀ । —ଗେଣ୍ଡୁଫୁଲ ମାଳଟି ଆସ୍ତେ ଝରିଯାଏ । କବିଙ୍କର ବୟସ ବଢ଼େ, ଦାଢ଼ି ବଢ଼େ, ଝିଅ ବଡ଼ ହୁଏ, ଶାଶୁଘରକୁ ଯାଏ । ଗୋଟାଏ ବର୍ଷ ଝଡ଼ ପାରି ହୋଇଗଲା ପରେ ଶିଖ ନଇଁଯାଏ । ଉଭୟେ ଦୋହଲି ଯାଆନ୍ତି । ଉଭୟଙ୍କ ଉପରେ ଗୋଟାଏ ବ୍ୟସମ୍ମ ସଂସାର ଆସୁରୀ ସମ୍ଭୋଗ କରି ଚାଲିଯାଏ । ଝିଅ ଯାଏ, ଆଉ ଝିଅ ମଧ୍ୟ ଯାଏ । ପୁଅ ଦୁହେଁ ଯାଆନ୍ତି, କିଏ ପଢ଼ିବା ପାଇଁ, କିଏ ଚାକିରି ପାଇଁ । ପୁଣି ଏକ ନିରୋଳା ମୁହୂର୍ତ୍ତରେ ଦୁଇଟି ପ୍ରାଣୀ ପରସ୍ପରକୁ ଅନାନ୍ତି··· । ପୁଣି କାହିଁ କେଉଁ ଗହ୍ୱରରୁ ପ୍ରେମ ଝରି ଆସେ । ଝୁରିଝୁରିଆ ମଣିଷଟି ଶିରାବହୁଳ, ଦୁର୍ବଳ; କ୍ଷୀଣାକାର ପରି କବିପତ୍ନୀ, ଶୀର୍ଣ୍ଣା, ରୁଗ୍‌ଣା—ଘରେ ଅନେକ ନିର୍ଜନତା ।

ଏଇ କାଳିଆ ଅଝଟ ପିଲାଟି ବଇଁଶୀ ବଜାଏ । ଗୁଞ୍ଜପାଟି ବାନ୍ଧି ମୟୂର ଚନ୍ଦ୍ରିକା ଖଞ୍ଜି ହୁଏ । ତାକୁ କାଖରେ ବସେଇ ଲହୁଣୀ ଖୁଆଇବାକୁ ହେବ । ସେ ଦହି ହାଣ୍ଡି ଭାଙ୍ଗିଲେ ତାକୁ ଦଣ୍ଡିବା ମନା । ପୁଣି ସେଓ କଣା ହୁଏ, ଅଙ୍ଗୁର ଆସେ । ସେ ଗାଧୋଇଲାବେଳେ କବି ନଇଁପଡ଼ି ରନ୍ଧାଘରେ ଦର୍ବି ପିଇ ଦିଅନ୍ତି, କରେଇରୁ ଭଜା ଟେକି ନେଇ ଖାଇଦିଅନ୍ତି । ଅନ୍ୟମନସ୍କ ହୋଇ କଥା କହନ୍ତି ନାହିଁ, କହିଲେ ବୁଝନ୍ତି ନାହିଁ । ପୁଣି ହଠାତ୍ ବେକରେ ଓହଳିପଡ଼ି ଗୁଡ଼ାଏ ଗେଲ

Digitized by srujanika@gmail.com

କର ପକାନ୍ତ । ସବା ସାନ ପୁଅଟି ଏମିତ ଅଙ୍କ ହେବ ବୋଲ କବପନ୍ନୀ କେବେ ଭାବ ନ ଥିଲେ !!

କବତାର ମୃଗବଧୂ ବ ଦୁଆର ବନ୍ଦ ଡେଇଁ ଘର ଭତରକୁ ପଶିଆସେ । ···ଯୁ'ାଁ ଭତରେ ଢନେ କନ୍ତୁ ପ୍ରକାଣ୍ଡ ମେଘ ନଇଁ ଆସେ । କବ ବାଉଳା ହୋଇ ବାଟ ପାଆନ୍ତନାହିଁ । ଯୁ'ାଁକୁ ପାର ହୋଇଗଲେ ଆରପଟେ କବତାର ରାଜ୍ୟ । ତାଙ୍କୁ ସେତାରର ସରୁ ବାଜଣା ପୁଣି ଶୁଭଯାଏ । ସେ ବର୍ଷକର ପୁରୁଣା 'ଫଟୋ'ଟିକୁ ଅନାନ୍ତ । ଏ କାଚ ଭତରୁ ସେ ଆସି ତାଙ୍କୁ ଆଉ ଡାକବ ନାହିଁ । ଦୁଇଟି ଝିଅ ବେଳେବେଳେ ଶାଶୁ ଘରୁ ଆସନ୍ତ; କନ୍ତୁ ଏ ଆଉ ଆସିବନାହିଁ ।—ରେଖାଏ ଧୂଆଁ ତାଙ୍କ ଆଖିର ପିତୁଳା ଉପରେ ଉପରକୁ ଉଠିଯାଏ । ପ୍ରକାଣ୍ଡ ମେଘ ଝରଝର ଝରଯାଏ ! ଝରଯାଏ ଆକାଶ, ଧରଣୀ, ପବନ, ପାଣି ଓ ସୂର୍ଯ୍ୟ । ଫଟୋ ଭତରୁ କବପନ୍ନୀ ଆହୁର ଉଜ୍ଜ୍ୱଳ ଦେଖାଯାନ୍ତ । ···ଝରଝର ଝରଯାଏ ପାଠକର ଲୁହଧାର । ସେ ଲୁହ ଭତରୁ ଅନାଏ; ଅନେକ ଶତାବ୍ଦୀ ପରେ ଅନାଏ ! 'ମଥୁର ମଙ୍ଗଳ'ଟି ଲୁହରେ ବୁଡ଼ବୁଡ଼, ଓଦା ସରସର । —କବତା କୁଆଡ଼େ ମରେନାହିଁ ବୋଲ ପ୍ରବାଦ ଅଛି ପର !

Digitized by srujanika@gmail.com

# ଏଣିକି କିଛି ଭୁଲାଯାଉ

ମହାକବି ଶ୍ରୀହର୍ଷଙ୍କ ବିଷୟରେ ପ୍ରବାଦ ଅଛି ଯେ ଏକଦା ନଦୀ କୂଳରେ ବସିଥିବା ସମୟରେ ସେ ଦୁଇଟି ସ୍ତ୍ରୀ ଲୋକଙ୍କର ଅକଥ୍ୟ କଳିକଜିଆ ଶୁଣିଥିଲେ । ପରେ ରାଜଦରବାରରେ ସାକ୍ଷ୍ୟ ଦେବାକୁ ଯାଇ ସେ ନିଜର ସମ୍ପୂର୍ଣ୍ଣ ଅଶ୍ଳୀଳ ଆଳାପଟିକୁ ନିର୍ବିକାର ପୁନରାବୃତ୍ତି ମଧ୍ୟ କରି ଦେଇଥିଲେ । ରାଜା ହୁଏତ ଅନାୟାସ ଦୋଷୀର ଦଣ୍ଡବିଧାନ କରିଥିବେ; କିନ୍ତୁ ସମସ୍ତେ ବିସ୍ମିତ ହୋଇଥିବେ କବିଙ୍କ ଏକ ଅପରିଚିତ ଭାଷାର ଗୁଡ଼ାଏ ପ୍ରଗଳ୍ଭ, କ୍ଷିପ୍ର ଅର୍ଥହୀନ ଧ୍ୱନିକୁ ସେ ଅବିକଳ ମନେରଖି ପାରିଲେ । ସେଥିପାଇଁ ସେ ମଧ୍ୟ ବିଶେଷ ପ୍ରଯତ୍ନ କରିନାହାନ୍ତି । ଜାଣିନାହାନ୍ତି ଯେ ତାଙ୍କୁ ସେ ବିଷୟରେ ରାଜଦରବାରରେ ଭବିଷ୍ୟତରେ ପରୀକ୍ଷା ଦେବାକୁ ପଡ଼ିବ । ଏହା ଅସମ୍ଭବ ମନେ ହେଉଥିଲେ ମଧ୍ୟ ଭାରତଭୂମିରେ ତାହା ଖୁବ୍ ସମ୍ଭବ । ଏଇଠି ବେଦକୁ ମଧ୍ୟ ଶ୍ରୁତି ମାଧ୍ୟମରେ ଆୟତ୍ତ କରାଯାଏ । ତେଣୁ ଶବ୍ଦର ଲୈଖିକ ରୂପ ଏଠି ଏକ ଅତି ଅର୍ବାଚୀନ ପଦ୍ଧତି । ଅସାଧାରଣ ଶ୍ରୁତିଧରଙ୍କର ଦେଶ ଏ ଭାରତ ଭୂମି । ପୋଥିକୁ ଦେଖି, ପଢ଼ି, ଲେଖି ଶିଖିବା ଏ ଦେଶର ପରମ୍ପରା ନ ଥିଲା । ଥରେ ଶୁଣିଦେଲେ ଯଥେଷ୍ଟ ହେଉଥିଲା ସ୍ମୃତିରେ ଧାରଣ କରିବାକୁ । ସେ ଋକ୍ ବେଦର ମହିମ୍ନ ମନ୍ତ୍ର ହେଉ ବା ଗଣିତ ଜ୍ୟୋତିଷ କିମ୍ବା ଲୀଳାବତୀର ଦୁରୂହ ସୂତ୍ର ହେଉ । ଏକଦା ମେକଲେ ସାହେବ ମଧ୍ୟ କହିଥିଲେ ଯେ ଯଦି ସମଗ୍ର ଲଣ୍ଡନ୍ ସଂଗ୍ରହାଳୟ ଜଳିଯାଏ, ସେ ପ୍ରାୟ ସବୁ ବହି ମନେ ପକାଇ ଲେଖି ଦେଇ ପାରିବେ । ଯୁଗେ ଯୁଗେ ଏପରି ସ୍ମୃତିଧରଙ୍କର ଜନ୍ମ ହେଉ । ମଣିଷ ମନର ଅକଳନୀୟ ପ୍ରସାର ବିଷୟରେ ବାରମ୍ବାର ତା'ର ଆତ୍ମବିଶ୍ୱାସ ପ୍ରତିଷ୍ଠିତ ହେଉଥାଏ । ନଚେତ୍ ଅନେକ ସମୟରେ ସେ ଆଶଙ୍କା କରିବ ଯେ ସ୍ମୃତିର ପେଟେରି ଖଣ୍ଡେଟୁମା ହୋଇ ଅଧିକ ଗୁଡ଼ା'ଏ କଣ ମନେରଖି ପକାଇଲେ ଫାଟିଯିବ ।

ଏ ପ୍ରକାର ପୃଷ୍ଠଭୂମିରେ ଯଦି ଜଣେ ମନେ ରଖିପାରୁନାହିଁ ତାକୁ ଅଯୋଗ୍ୟ ତଳେ ଗାରିବା ତ ସାଧାରଣ କଥା; କିନ୍ତୁ ଯଦି ସେ ପାଟି ଫିଟେଇ କସ୍ମିନ୍‌କାଳେ

Digitized by srujanika@gmail.com

କହିଦେଇଛି ଯେ ମନେ ରଖିବା ସେପରି କିଛି ବଡ଼ କଥା ନୁହେଁ ବା ମନେରଖିବା ଉଚିତ ନୁହେଁ, ଭାରତୀୟ ପରମ୍ପରାର ବିଲୋପ କରୁଥିବାରୁ ତାଙ୍କୁ ଦେଶଦ୍ରୋହ ଅପରାଧରେ ପ୍ରାଣଦଣ୍ଡ ଦେବା ମଧ୍ୟ ଅସମ୍ଭବ ନୁହେଁ । ତଥାପି ଭାରି ପ୍ରବୃତ୍ତି ହୁଏ ସତ; କଥାଟା କହିଦେବାକୁ ! ବହୁ ସମୟରେ ମନେହୁଏ ଯେ ଝରକା ନ ଥିବା ଗୋଟାଏ ଅନ୍ଧାରୁଆ ଗୋଦାମ ଘରେ ଥାକମାରି ଗୁଡ଼ାଏ ଧୂଳିଆ ଆଳୁବସ୍ତା ରଖିବା ଯାହା, ପୁରୁଣା ଅଖାଭିତରେ ଝୁଙ୍କି ଝୁଙ୍କି କୁଣ୍ଡା ଭର୍ତ୍ତିକରିବା ଯାହା, ଗୁଡ଼ାଏ ଶବ୍ଦରୂପ ଧାତୁରୂପ ଜବରଦସ୍ତି ମନେରଖିବା ମଧ୍ୟ ତାହା ! ମୁଠାଏ ଲେଖା ବରି ଧରି ଅଷ୍ଟା ସଳଖି ଶ୍ଳୋକ ମୁଖସ୍ଥ କରୁଥିବା ଅବସ୍ଥାରେ ମୁଁ ଏ ଭାରବାହୀଗୁଡ଼ିକୁ ଦେଖିଛି ଓ ସେହିଦିନଠାରୁ ସଂକଳ୍ପ କରିଛି ଯେ ବରଂ ମୂର୍ଖ ହେବା ଭଲ; କିନ୍ତୁ ଏପରି ମନକୁ ମ୍ୟୁଜିୟମ କରି ତା'ଭିତରେ ମଲାଜନ୍ତୁ ଓ ପୁରୁଣା ପଥର ସଜାଡ଼ି ରଖିବାର କିଛି ଅର୍ଥ ନାହିଁ । ବହୁ ଚେଷ୍ଟା ପରେ ହାରିଯାଇ ଶେଷକୁ ଗୃହଶାଳୀ ଅବଧାନେ କହିଥିଲେ—ଏଇଟା 'ବେଗ-ବେଗା' ସବୁ ବୁଝିବ କିନ୍ତୁ ମନେରଖି ପାରିବ ନାହିଁ—ଭାରି ବୁଦ୍ଧିଆ ହେବ କିନ୍ତୁ ପାଠୁଆ ହେବନାହିଁ । ଅବଧାନେ ଅନେକ ସମୟରେ ସତ କହିଥାନ୍ତି । ମୁଁ ମଧ୍ୟ ଖୁବ୍ ଚେଷ୍ଟା କରିଛି—ଗଜପତି ବିରୁଦାବଳୀ କିମ୍ବା ମୋଗଲ ବଂଶାବଳୀ ମନେ ରଖିବାକୁ, କିନ୍ତୁ ପାରି ନାହିଁ । ଫଳରେ ପାଠୁଆ ହେବାର ତ ନୋହିଲା, ଏଣେ ସଂସାରରେ ବୁଦ୍ଧିର ବିଶେଷ ପ୍ରୟୋଜନ ବା ଆଦର ନ ଥିବାରୁ ସେଇଟାର ମଧ୍ୟ ବିଶେଷ କିଛି ବିକାଶ ହୋଇଥିବା ପରି ଜଣାଯାଉ ନାହିଁ ।

ଯେଉଁମାନେ ମନେରଖିବାଟାକୁ ଏତେ ବେଶି ଜୋର୍ ଦିଅନ୍ତି, ସେମାନେ ସତରେ କଣ ସବୁ ମନେ ରଖନ୍ତି ? ପାଞ୍ଚ ଦଶ ବର୍ଷରେ କୋଉଠି ସବୁ ସନ୍ଧା ବାଟେ ଗଳି ପଡ଼ିଯାଏ, ସବୁ ଆସ୍ତେ ଆସ୍ତେ ପାସୋରି ହୋଇଯାଏ । ସେଥିରୁ ଗୋଟାଏ ପାଠୁଆ ନେବୁଚ୍ଛଦନେଜାରର ନାତିନା କ'ଣ ବା ଏସ୍କିମୋ ଦେଶର କୌଣସି ଚମଡ଼ା ପୋଷାକ ବା ତମ୍ବୁର ନାମ କ'ଣ ମନେ ପଡୁନଥିବାରୁ ଲୁହ ଗଡ଼େଇ ହୁଁ ହୁଁ ହୁଏ । ତା' ଇଚ୍ଛା ସେ ଆତ୍ମହତ୍ୟା କରନ୍ତା ! ଶୁଙ୍ଗ ବଂଶର ତୃତୀୟ ରଜା କେବେ ତା'ର ଦଶମ ପତ୍ନୀକୁ ବିବାହ କଲେ, ଯଦି ସେ ମନେ ରଖି ନ ପାରିଲା ତେବେ ସେ କ'ଣ ବଞ୍ଚିବା ଉଚିତ୍ ? ଆଜ୍ଞା, ନିଶ୍ଚୟ ଉଚିତ୍ ! ବରଂ ସେପରି ଗୁଡ଼ାଏ ମନେ ରଖି ତା'ର ବଞ୍ଚିବାର କିଛି ଅର୍ଥ ନାହିଁ । ଗେଙ୍ଗୁଟି ବୋଙ୍ଗ ମୁଣ୍ଡେଇ

Digitized by srujanika@gmail.com

ସେ ଝଲ ଝଲ ନିଷ୍ପ୍ରୟ କିଛି ବାଟ ଚାଲେ । ଲୋକେ ତା'ର ଏ ଅସାଧ୍ୟ ସାଧନ ଦେଖି ତାଟକା ହୁଅନ୍ତି । ତା'ପରେ ତା' ଆଖିରେ ଜଳା ଫିଟିଯାଏ, ସେଇବାଟେ ସବୁ ଗଳିଯାଏ । ସେ ଗୁଡ଼ାଏ ଗୋଟାଳ ଗୋଟେଇ ପୁଣି ଆଖିରେ ସାଇତେ; କିନ୍ତୁ ଅସଂଖ୍ୟ ଜଳାବାଟେ ବିଦେଶୀ ଗେଙ୍ଗୁଟିଗୁଡ଼ିକ ନୀରବରେ ଅନ୍ଧାର ଭିତରକୁ ପହଁଚି ଯାଆନ୍ତି । ବରଂ ମୂଳରୁ ଗୋଟିଏ ଚାଲୁଣୀ ଧରି ଚାଲିଲେ କିଛି ଅସୁବିଧା ନାହିଁ । ହେଇ ଆସିଲି, ହେଇଗଲି ! ଚାଲୁଣୀ ଖଣ୍ଡ ସବୁବେଳେ ପରିଷ୍କାର । ତା'ର ସହସ୍ର ଜଳାର ଏପାଖ ସେପାଖ ଏକାକାର, ସେଇ ନିଷ୍ଠୁର ଅନ୍ଧକାର । ଖୋଲାଖୋଲି ପବନ ଯା ଆସ କରେ, ଶବ୍ଦ ଯାତାୟାତ କରେ ।

ଧରନ୍ତୁ ଯଦି କିଛି ପାସୋର ହେଉନଥାନ୍ତା, ଯଦି ମନର ମଞ୍ଚ ଉପରକୁ ଯେ ପ୍ରବେଶ କଲା, ସେ ଆଉ ପ୍ରସ୍ଥାନ କରନ୍ତାନାହିଁ, ତେବେ ଅଳ୍ପ ସମୟ ଭିତରେ ଏତେ ଭିଡ଼, ଏତେ ଠେଲାପେଲା ହୁଅନ୍ତା ଯେ ଆଉ ସମ୍ଭାଳିବା ସମ୍ଭବ ହୁଅନ୍ତା ନାହିଁ । ଶେଷରେ ନବେ ଭୁଲି ନଗଲେ ଜୀବନ ସତକୁ ସତ ଦୁର୍ବହ ହୋଇଯିବ । ଗତ ତିରିଶ ବର୍ଷ ଭିତରେ ଦୈନିକ କଣ ତିଅଣ ଶାଗ ହୋଇଥିଲି, ଯଦି ଜଣେ ଅନିବାର୍ଯ୍ୟ ଭାବରେ ମନେରଖେ ଏବଂ ମନେରଖେ ଯାହାକଲିବେଳେ କେଉଁଠାରେ କେତେବେଳେ ସେ କାହା ସହିତ ସାକ୍ଷାତ କରିଛି, ପ୍ରତିଦିନ ଖବର କାଗଜର ଆମୂଳଚୂଳ ମନେରଖେ ଏବଂ ମନେରଖେ ତା' ଜୀବନର ଟିକିନିଖି ପ୍ରତିଟି ମୁହୂର୍ତ୍ତର ଅଭିଜ୍ଞତା, ତେବେ ସେ ମସ୍ତିଷ୍କର ସବୁ ସ୍ନାୟୁତନ୍ତ୍ର ଛିଣ୍ଡି ପଡ଼ିବ ଏବଂ ସେ ପାଗଳ ପରି ଉତ୍କ୍ଷିପ୍ତ ହୋଇ ଶେଷରେ ମରି ଶୋଇଯିବ । ଭାଗ୍ୟଭଲ ଯେ ମୂଳରୁ ସେପରି ଉପାଦାନରେ ମସ୍ତିଷ୍କ ମନଟିକୁ ତିଆରି କରାଯାଇ ନାହିଁ । ପାଣିରେ ଗାର ପକାଇଲେ ତରଙ୍ଗ ସୃଷ୍ଟି ହୁଏ; କିନ୍ତୁ ଗାର ଲିଭିଯାଏ । ମନଟା ପ୍ରାୟ ସେହିପରି !

ସ୍ମୃତିର ଗନ୍ତାଘରେ ନିବୁଜ କାନ୍ଥ ନାହିଁ । କବାଟ କୋଳପ କିଛି ନାହିଁ । ଦୁଆରି କଣ୍ଟିଆଳ ବି କେହି ନାହାନ୍ତି । ମନର ପାଞ୍ଚଟା ଦ୍ୱାର ବାଟେ ପାଞ୍ଚଟା ସମୁଦ୍ର ଅଜାଡ଼ି ହୋଇଯାଏ ଏବଂ ସ୍ମୃତି ଉପରେ ଦେଇ ମୁହାଣ ଆଡ଼େ ମାଡ଼ି ଚାଲି-ଯାଏ । ଲୁଚେଇ ହୋଇଯାଏ ଯେଉଁଠାରୁ ଆସିଥିଲା ସେଇଠାକୁ । ଏଠି ସେଠି ଟିକିଏ ଓଦା ଧରିଯାଏ । କିଛି ସମୟ ପାଇଁ । ତା'ପରେ ବେଳଜାଣି ସେ ବି ନିଗିଡ଼ିଯାଏ । କିଛି କଥା, କିଛି ରୂପ, କିଛି ଗନ୍ଧ କିଛିଦିନ ଧରି ମନେରହେ । ତା'ପରେ ଦୂରେଇ ଯାଏ, ଗହ୍ୱରେଇ ଯାଏ, ହଜିଯାଏ ।

Digitized by srujanika@gmail.com

କ'ଣ କେମିତି ମନେରହେ ଏବଂ ଆଉ ସବୁ ମନେ ରହେନାହିଁ ତା' ଜାଣିବା ସହଜ ନୁହେଁ । ସେ ଏକ ଯୋଗାଯୋଗ କଥା । ମୋଟାମୋଟି ଭାବରେ ଭଲପାଇବା ପରି । ଅତଏବ ଏ ସମ୍ପର୍କରେ ଜବରଦସ୍ତି ନ ଚଳିବା ଉଚିତ ! କିନ୍ତୁ ଚଳେ ! ସଂକଳ୍ପ ଯାହାକୁ ଗୋଟାଏ ଅବାଞ୍ଛିତ ଭାବରେ ସ୍ମୃତି ଉପରେ ମଡ଼ାଇ ରଖିଦେଇପାରେ । ଶୁଆକୁ 'ରଘୁପତି' ରଟେଇଲାପରି କୌଣସି କାରଣରୁ କିଛି ଆବ୍ରାକାଡ଼ାବ୍ରା ଜପିବାକୁ ହେଲେ, ସଂକଳ୍ପ ଗ୍ରୁଟିଆ ପରି କାର୍ଯ୍ୟକରେ । ଦୈନିକ ସେ ଅଜପା ମନ୍ତ୍ରକୁ ମନର ଖାସ୍‌ମାହାଲ ଭିତରକୁ ଆଣି ପୁଣି ସ୍ମୃତିର ବସାଘର ଭିତରେ ଗୁଡ଼ାଏ । ଏପରି ଅଭ୍ୟାସ ହେଉହେଉ ଦେଖାଯାଏ ଯେ ଆବ୍ରାକାଡ଼ାବ୍ରା ସେ ରାଜ୍ୟର ଏକ ଚାଲିକାଭୁକ୍ତ ଅଧିବାସୀ । ଏହିଭଳି ସମସ୍ତ ବ୍ୟାକରଣ ମୁଖସ୍ଥ କରାଯାଏ । ଧର୍ମଶାସ୍ତ୍ର, ଶ୍ରୁତି, ସ୍ମୃତି, ପିଙ୍ଗଲକୋଡ଼ ଆୟତ୍ତ କରି ବିଶିଷ୍ଟ ପାଣ୍ଡିତ୍ୟ ପ୍ରକାଶ କରାଯାଏ; କିନ୍ତୁ ସବୁ ଗ୍ରୁଟିଆ କ'ଣ ସବୁବେଳେ ସମାନ । ତାଙ୍କ ଭିତରେ ଅଳସୁଆ ଓ ଠକ ମଧ୍ୟ ଅଛନ୍ତି । ସେମାନେ ଟିକିଏ ଢୋଲେଇ ପଡ଼ିଲେ ସ୍ମୃତି ଝାଡ଼ଝୁଡ଼ ହୋଇ ବସିଯାଏ । ଯେଉଁ ନଗ୍ରୁଟିଆ ପଢ଼ୁଆକୁ ସେଇ ନଗ୍ରୁଟିଆ ପଢ଼ୁଆ । ଆବ୍ରାକାଡ଼ାବ୍ରା ଆଉ କୋଉଠି ଦିଶୁନାହାନ୍ତି । ନଖଦର୍ପଣ ଉପରେ ଅନେକ ଝାପସା ଧୂଳି ! ଏଭଳି ଅବସ୍ଥାରେ ଭୀମସେନ ଗଭୀର ଉଦ୍‌ବେଗରେ 'ଗୋଲ୍‌କପୁର୍'ଙ୍କୁ ଖୋଜିବାର ପୁରାଣରେ ଉଲ୍ଲେଖ ଅଛି ।

ଆମେ ଭୁଲିଯାଉ ଏବଂ ଭୁଲିଯାଉ ବୋଲି ବଞ୍ଚିଯାଉ; କିନ୍ତୁ କିଛି କିଛି ତ ମନେ ରହେ । ନହେଲେ ନିଜକୁ ଅମୁକ କି ସମୁକ ବୋଲି ଜାଣିବା ଏବଂ ଜଣେଇବା ସମ୍ଭବ ହୁଅନ୍ତା ନାହିଁ ଏବଂ ଆଉ କେତେଗୁଡ଼ାଏ ଶ୍ରେଷ୍ଠ ଶ୍ରେଷ୍ଠ କଥା ମନେରଖି ପାରିଲେ ଜୀବନରୁ ହୁଏତ ଗୁଡ଼ାଏ ଅବାଞ୍ଛିତ ବିରକ୍ତି ମଧ୍ୟ କଟିଯାଆନ୍ତା । ଯଥା ଧରାଯାଉ 'ଦୋକଡା ଉବା' ! ତାକୁ ଅଣ୍ଟାରେ ଖୋସିବା ପାଇଁ ଦୈନିକ ଯେତେଥର ପ୍ରତିଜ୍ଞା କଲେ ମଧ୍ୟ ସେଇଟା କେତେବେଳେ କେମିତି ଖସିଯାଏ, ତାହା ଜଣାପଡ଼େ ନାହିଁ । ରାତିଅଧରେ ଦୀପଧରି ଖଟତଳଯାକ ଗୁରୁଣ୍ଡି ଗୁରୁଣ୍ଡି ଅଣ୍ଡାଳୁଥିବା ଅବସ୍ଥାରେ ଆମେ ଆମ ଅଜାଙ୍କୁ ଦେଖିଛୁ; ଯେ କି ସମଗ୍ର ଅମରକୋଷ ଏକା ନିଃଶ୍ୱାସରେ ଗାଇଯାଉଥିଲେ; ଯଜୁର୍ବେଦରୁ ତେର ଅଧ୍ୟାୟ ଆଙ୍ଗୁଠି ଟିପରେ ଗଣିଦେଉଥିଲେ । ଦୋକଡା ଉବା ପରି ତାଙ୍କ 'ଚଷମା' । ଦଶଥର ତାକୁ ହଜେଇ ପୁଣି ପାଆନ୍ତି । ଶେଷକୁ ଗୋଟାଏ ଥର ଆଉ ମୋଟେ ପାଇଲେ ନାହିଁ । ଗୋଟାଏ ବୟସରେ ବୋଧହୁଏ ଖଣ୍ଡେ

Digitized by srujanika@gmail.com

ବାଡ଼ଧର ଖୁଲିବାକୁ ମନହୁଏ । ଧରିଲେ ଦମ୍ଭଲାଗେ । ଶେଷକୁ ନ ଧରିଲେ ଚଳେନାହିଁ । ଆମ ପଣ୍ଡିତ ଅଜାଙ୍କ ଅମଳରେ ଆମେ ଜାଣିବାରେ ସେ ଅନ୍ତତଃ ଷାଠିଏ ଖଣ୍ଡ ବାଡ଼ି ବଦଳ କରିଥିବେ । ବଜାରରେ, କୁଣିଆଘରେ, ମାଛପସରା ପାଖରେ, ଖଣ୍ଡେ ବାଡ଼ି ଅବଶ୍ୟ ହଜିବ । ସେ ତା' ଉପରେ ଗାଧୋଇବା ଆଗରୁ କେତେ ତେଲ ମାଲିସ କରି ତାକୁ ପଚେଇଥାନ୍ତି; କିନ୍ତୁ କ'ଣ କରାଯାଏ ? —ତାକୁ ବାହୁନି ବାହୁନି ଦୁଇ ତିନିଦିନ ଗଲେ ପୁଣି ଖଣ୍ଡେ ଯୋଗାଡ଼ ହୁଏ । ବଙ୍କା ବାଡ଼ିଟିକୁ ସେ ଆମର ସରଳ ନାଁ କେତୋଟି ମନେରଖି ପାରନ୍ତି ନାହିଁ । ଅମରକୋଷର ମୂଳରୁ ଆଜିଡେ଼ଇଲିପରି ଆମ ସମସ୍ତଙ୍କର ନା ଯାକ ଧାଡ଼ିବନ୍ଧା ଗଡ଼େଇ ଆଣିଲେ ହୁଏତ ଗୋଟାକୁ ଧରିଦିଅନ୍ତି । ବେଳେବେଳେ ତା'ବି ହୁଏନାହିଁ । ଚଣ୍ଡାମୁଣ୍ଡକୁ ଥରେତ ଘୁମିଲେ ଟିପ ଖସିଯାଏ । ସେ ଚକ୍‌କଣ ଭୂମିରେ ଗୋଟାକଆ ନା ବା କାହିଁ ରହିବ ? କେବଳ ନାତି ନାତୁଣୀଙ୍କ ନା ମଧ୍ୟ ସହଜରେ ମନେ ପକାଇପାରନ୍ତି ନାହିଁ । ସବୁଗୁଡ଼ିକ କୁଆଡ଼େ ଆସି ଆସି ତାଙ୍କ ଜିଭ ଅଗରେ ଅଟକି ଯାଆନ୍ତି । ସେଇଠି ବୋଧହୁଏ ରସାତଳକୁ ବିବର ଫିଟିଯାଇଛି । ସବୁ ସେଇଠି ଗଳିପଡ଼ନ୍ତି, ନିଖୋଜ ହୋଇଯାଆନ୍ତି । ଗୋଟାଏ ଗୋଟାଏ ହୁଏତ ଚଢ଼ିଟି ବାହାରି ଆସନ୍ତି । ସେଥିପାଇଁ ଅଜା ଅବଶ୍ୟ ଦାୟୀ ନୁହନ୍ତି ।

ଆମେ ନାତି ନାତୁଣୀଯାକ ମଧ୍ୟ ସେଇ ପରମ୍ପରାର ପିଲା । ଆମ ଅଙ୍କ ବହି ହଜିବା ଭାରି ସାଧାରଣ କଥା । ଖଡ଼ିପାଇଁ ନିତିଦିନ କନ୍ଦା । ସ୍କୁଲ୍ ଯିବା ବେଳକୁ କମ୍ପାସ୍ ବାକ୍‌ସର ବିଭିନ୍ନ ଅଂଶ ଘରର ଦାଣ୍ଡଦୁଆରୁ ବାଡ଼ିଆଡ଼ ପର୍ଯ୍ୟନ୍ତ ଖୋଜିବା ଏକ ଦୈନନ୍ଦିନ ଘଟଣା । ପଇସା ନେଇ ପାଖ ବଜାରକୁ ଗଲେ ସବୁଠାରୁ ଜରୁରୀ ସଉଦାଟି ଭୁଲିଯିବା ଏବଂ ସଂଖ୍ୟାପୂରଣ ପାଇଁ କିଛି ଚନାବାଦାମ ଭୁଲରେ କିଣି ଆଣିବା ମଧ୍ୟ ଭାରି ସ୍ୱାଭାବିକ୍ କଥା । ଠିକ୍ ସମୟରେ କଥାଟା ମନେପଡ଼େ ନାହିଁ ବୋଲି ଘରେ ଗାଳି, ବାହାରେ ଗାଳି ଖାଇ ଖାଇ ଦେହଘଷି ଆ ହୋଇଯାଏ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ଏ ଖୋଇ ମଧ୍ୟ ବଢ଼ିଗଲେ । ପୁଅ ପାଖକୁ ତା' ସାଙ୍ଗ ଦେଇଥିବା ଚଠି ମୁଣା ଭିତରେ ପନ୍ଦରଦିନ ପଡ଼ିରହେ । ଧୋବା ଘରକୁ ଲୁଗା ପଡ଼ିଲାଦିନ ହୁଏତ ସେ ନିଜେ ତାକୁ ଆବିଷ୍କାର କରେ । ଟେଲିଫୋନ ଦାନ୍ତ ନେଫେଡ଼େଇ ମାନିଯିବାକୁ ହୁଏ ଯେ ଏଣିକି ଆଉ ସବୁ କଥା ମନେ ରହୁନାହିଁ । ଚଠିକୁ କେନ୍ଦ୍ର କରି ସବୁ ପ୍ରକାର ପାସୋରିବା ବଢିଯିବା

Digitized by srujanika@gmail.com

ଦେଖାଦିଏ । କାହାପାଖକୁ ଚିଠି ଲେଖିବା ପଡ଼ିଗଲେ ସେଇ କାମଟି ଦିନଗୁଡ଼ିର ଧାପରେ ଉଠିଆ ହୁଏ । ଦିନେ କାର୍ଡ଼ କିଣାଯାଏ, ଆଉଦିନେ ତାରିଖ ପଡ଼େ, ଆଉଦିନେ ହୁଏତ ଚିଠି ଲେଖାହୁଏ; କିନ୍ତୁ ତାକୁ ନେଇ ଡାକଘରେ ପକାଇବା କାଠିକର ପାଠ । ବନ୍ଧୁବାର ଏ ମୁଣ୍ଡରୁ ସେ ମୁଣ୍ଡକୁ ବଦଳି ହୋଇସାରିବା ପରେ ଯଥାସମୟରେ ପ୍ରାୟ ମାସକ ପରେ ସେଇଟି ବନ୍ଦର ଛାଡ଼େ । ତେଣିକି ଆଉ କୂଳରେ ତାହା ଲାଗେନା ନାହିଁ, ଯଦି ବନ୍ଧୁ ଜଣକ ସମଧର୍ମୀ ହୋଇଥାନ୍ତି, ତେବେ ଜାଣିବା ଅସମ୍ଭବ । ।

ଏମିତି ଅନେକ ଜିନିଷ ଭୁଲି ହୋଇଯାଏ । ମନେରଖିବା ସତେ ବା ଏକ ଅସ୍ୱାଭାବିକ ପ୍ରଚେଷ୍ଟା । ପାସୋରିବା ହିଁ ମନର ସ୍ୱାଭାବିକ ଧର୍ମ । ଜବରଦସ୍ତି ତା'ଉପରେ ଚପେଇ ନ ରଖିଲେ, ସେ ହୁଏତ କିଛି ମନେରଖନ୍ତା ନାହିଁ । ମନ ଭିତରୁ ଯଦି ଭୟ ଚାଲିଯାନ୍ତା, ଲୋଭ ଚାଲିଯାନ୍ତା, କ୍ରୋଧ ଓହ୍ଲେଇ ଯାଆନ୍ତା, ତେବେ ବୋଧହୁଏ ସେ ଆକାଶପରି ଖୋଲାଯାଆନ୍ତା । ସେଥିରେ କେତେ ପ୍ରକାରର ମେଘ ଆସନ୍ତେ ଓ ଯାଆନ୍ତେ; କିନ୍ତୁ କାହାକୁ ସେ ଧରି ରଖିବାକୁ ଇଚ୍ଛା କରନ୍ତା ନାହିଁ । ଭୁଲାମନକୁ ଠିକ କହିଲେ ସେଇଟା ଭୋଳାମନ । ସେ କାହାକୁ ଡରେ ନାହିଁ । ଏଣୁ ତାକୁ ସନ୍ତୁଷ୍ଟ କରିବାକୁ ବା ତା' ରୁଚିକୁ ସୁହାଇଲାଭଳି କୌଣସି କଥା ମନେ ରଖିବାକୁ ସେ ବାଧ ନୁହେଁ । ଧନ, ମର୍ଯ୍ୟାଦା, ପ୍ରତିପତ୍ତି ବା ପ୍ରତିଷ୍ଠା ପାଇଁ ତା'ର ଲୋଭନାହିଁ । ଏଣୁ ହିସାଖାତା ରଖି ଗୋଟାକ ପରେ ଗୋଟାଏ ଇଟା ଖଞ୍ଜିବାର ଯୋଜନା ତାର ନାହିଁ । ଏଣୁ ମନେରଖିବାର ପ୍ରୟୋଜନ ମଧ୍ୟ ନାହିଁ । ମାନ ଅପମାନକୁ ସମାନ ଗୁରୁତ୍ୱ ଦେଉଥିବାରୁ ତା'ର କାହା ଉପରେ କ୍ରୋଧ ଉପଜାତ ହେବାର ମଧ୍ୟ ଅବକାଶ ନାହିଁ । ଦିନରାତି ଶତ୍ରୁନିପାତ ମନ୍ତ୍ର ଜପି କୁରାଡ଼ୀ ପଜେଇବାରେ ପ୍ରୟୋଜନ ନାହିଁ ।

ପାସୋରିବା ଅର୍ଥ ପଛକୁ ପକେଇଦେବା—ମଣିଷ ସମାଜର ହୋର ଅବୁଝାମଣା ଭିତରେ କଥା କହିଲେ ଶତ୍ରୁ, ମନେରଖିଲେ ହାଣାହାଣି । ପଛକୁ ପକେଇଦେଲେ ନୂଆକରି ବୁଝାବୁଝି ହେବାର ଆଶାଥାଏ; ବ୍ୟକ୍ତି ସମ୍ପର୍କରେ ନୂଆପାଖୁଡ଼ା ଫିଟେଇବାର ସମ୍ଭାବନା ଥାଏ । ପଛକଥାକୁ ଗଣ୍ଠି ପକେଇ ରଖିଲେ ଆଗାମୀ ଆଲୋକକୁ ଗ୍ରହଣ କରିହୁଏ ନାହିଁ । ସେଥିପାଇଁ ବୋଧହୁଏ ଦିନଯାକର କଳିତକରାଳ, କ୍ରୋଧ, ଆକ୍ରୋଶ, ମାନ ଅପମାନକୁ ପୋଛିଦେବାକୁ ପୂର୍ଣ୍ଣ ନିର୍ମଳ ନିରାବରଣ ହୋଇ ନୂଆ ସୂର୍ଯ୍ୟକୁ ଅଭିନନ୍ଦନ ଜଣାଇବାକୁ ଗୋଟାଏ ରାତିର

Digitized by srujanika@gmail.com

ପାସୋର୍-ପ୍ରଲେପ ମନ ଉପରେ ବୋଳି ହୋଇଯାଏ; କିନ୍ତୁ ଆମେ ଉଠିବା ମାତ୍ରେ କାଲି କଥାଯାକ ଅବିକୃତ ମନେପଡ଼ିଯାଏ । ପୁରୁଣା କ୍ଷତ ସବୁ ପୁଣି ରକ୍ତ ଝରାନ୍ତି; ପୁଣି ଅସହ୍ୟ ବିଦ୍ୱେଷରେ ଜର୍ଜ୍ଜରିତ ଲହୁଲୁହାଣ ହେବାପାଇଁ ଆମେ ବାହାରିପଡ଼ୁ, ପଛକଥା ପଛକୁ ପକେଇ ହୁଏନାହିଁ ବୋଲି ସବୁ ଜମାଟ ବାନ୍ଧି ଗୋଟାଏ ଦୁର୍ଜୟ ସଙ୍କଟ ରୂପେ ଦେଖାଦିଏ । ଯଦି ସତକୁ ସତ ପ୍ରତ୍ୟେକ ଦିନର ସବୁ ଉତ୍ତାପକୁ ରାତିର ନିବିଡ଼ ନିର୍ଜନତା ଭିତରେ ବୁଡ଼େଇ ଦେଇ ହୁଅନ୍ତା, ବୋଧହୁଏ ଜୀବନରୁ ଅନେକ ଅସ୍ୱସ୍ତି ଦୂର ହୋଇଯାଆନ୍ତା, ଦିନକୁ ଦିନ ମସ୍ତିଷ୍କ ଏତେ କ୍ଲାନ୍ତ ଅନୁଭବ କରନ୍ତା ନାହିଁ ।

ତା' ବୋଧହୁଏ କିଛି କିଛି ନିଶ୍ଚୟ ହୁଏ । ଦିନଶେଷର କ୍ଲାନ୍ତ ଘର୍ମାକ୍ତ ବାଟୋଇଟିର ହାତଧରି ନିଦ ଆସ୍ତେ ଟାଣିନିଏ, ଖୁବ କାକର ନରମ ସ୍ୱପ୍ନ ରାଜ୍ୟ ଭିତରକୁ । ସେଇଠାରେ ତା କ୍ଷତରେ ଚନ୍ଦନ ବୋଳାହୁଏ । ବହୁ ଭଙ୍ଗା-ରୁଜାକୁ ପୋଛି ଦିଆଯାଏ । ତା' ନ ହେଲେ ସେ ତା ପରଦିନ ପୁଣି ଚାଲି ପାରିବ ନାହିଁ । ଶୋଇ ନ ପଡ଼ିଲେ, ଅନେକ କଥା ଭୁଲି ନ ଗଲେ, ସ୍ନାୟୁର ତୋରଣ କୁଡ଼େଇ ହୋଇ ପଡ଼ିବ ଖଣ୍ଡ ଖଣ୍ଡ ହୋଇ !

ତା'ହେଲେ ତ ଯେତେ ପାସୋରିବ ସେତେ ଭଲ ! କିଛି ମନେ ନ ରଖିଲେ ସବୁଠୁ ଭଲ । ଏଠି ପ୍ରତିପକ୍ଷ ନିଶ୍ଚୟ ଟିକିଏ ହସିବେ । କହିବେ ଭୁଲିଗଲେ ଆଉ ସମାଜ, ସଂସ୍କୃତି, ସାହିତ୍ୟ, ଦର୍ଶନ, ବିଜ୍ଞାନ ଆଦି ରହିବ ତ ? ଏ ସମସ୍ତ ପରା ଯୁଗଯୁଗର ସଞ୍ଚିତ ପାଣ୍ଠି ! ଯଦି ଏବିକଥା ପରମୁହୂର୍ତ୍ତରେ ଭୁଲି ହୋଇଯାଏ, ତେବେ ନିଜକୁ ମଧ୍ୟ ଗୋଟିଏ ବିଚ୍ଛିନ୍ନ ବ୍ୟକ୍ତିରୂପେ ବୁଝି ହେବ ନାହିଁ । ଯାହା ବୁଝିଲ ତାକୁ କଥାରେ ପ୍ରକାଶ କରିହେବ ନାହିଁ । କାରଣ ବର୍ଣ୍ଣମାଳା, ଶବ୍ଦ ଅର୍ଥ ସବୁ ପାସୋରି ହୋଇଯାଇଥିବ । ତେବେ ତ ନିଶୁଣୀରେ ସବୁ ଧାପ ଚଢ଼ିଯାଇ ଶୂନ୍ୟକୁ କୁଦାମାରି ଯିବାକଥା । ସମଗ୍ର ନିଶୁଣୀ ଖସି ପଡ଼ିବ ଏବଂ ତା'ପରେ ନିଜର କ'ଣ ହେବ ତା' କିଏ କହିପାରିବ ? ସ୍ମୃତି ନ ରହିଲେ କାଳ ଜ୍ଞାନ ଆସିଲି କାହିଁ ? ଘଟଣା ଘଟିଲେ ପରେ ଯଦି ଲିଭିଯାଆନ୍ତା ପରମ୍ପରା ଆଉ ଦିଶୁନଥାନ୍ତା, ଅତୀତ ବର୍ତ୍ତମାନକୁ ଯୋଡ଼ି ହେଉନଥାନ୍ତା, ତେବେ ଭବିଷ୍ୟତ କ'ଣ ଆକାଶରୁ ଆସନ୍ତା ? ସବୁ ଗଳିପଡ଼ନ୍ତା ଗୋଟାଏ ଅବ୍ୟକ୍ତ ଶୂନ୍ୟକୁ । କାଳଜ୍ଞାନ ନଥିଲେ ବସ୍ତୁଜ୍ଞାନ ମଧ୍ୟ ସମ୍ଭବ ନୁହେଁ । ମୋଟ ଉପରେ ଜ୍ଞାନ ହିଁ ସମ୍ଭବ ନୁହେଁ । ଅତଏବ ସ୍ମୃତିକୁ ଯଦି ବାତିଲ୍ କରି ଦିଆଯାଏ, ମନ

Digitized by srujanika@gmail.com

ତା'ର ଆଧାର ଅଭାବରେ ଭାଙ୍ଗି ପଡ଼ିବ । ସ୍ମୃତି ହିଁ ମନର ଆତ୍ମସ୍ୱରୂପ, ତା'ର ମୂଳପିଣ୍ଡ । ବହୁକଥା ମନେରଖିବା ପରେ ତାକୁ ଗୁନ୍ଥିବା ପ୍ରକ୍ରିୟାରେ ମନର ଅନ୍ୟାନ୍ୟ ବିଭବ ସବୁ ବୋଧହୁଏ ପ୍ରକଟିତ ହୋଇଥିଲ । ତା'ହେଲେ ସବୁ ପାସୋର ହୋଇଗଲେ ମଣିଷର ହିଁ ବିଲୟ ହୋଇଯିବ ।

ତା' ଠିକ୍ ! ବୋଧହୁଏ ହୋଇଯିବ । ହୋଇଗଲେ ମଧ୍ୟ ସୃଷ୍ଟି କିଛି ଗୋଡ଼ ମାଟି ହୋଇ ଯାଉନାହିଁ । ମଣିଷର ବହୁ ଆଗରୁ ସୃଷ୍ଟି ଯେପରି ଥିଲ, ସେ ନିଶ୍ଚିହ୍ନ ହେବାର ଅନନ୍ତକାଳ ପରେ ମଧ୍ୟ ତା ନିଜ ନିୟମରେ ସେହିପରି ଚାଲିଥିବ । ମଣିଷ ଆସିବା ଯିବା ଗୋଟାଏ ନିମେଷକର ବ୍ୟବଧାନ ମାତ୍ର ହୋଇପାରେ; ତଥାପି ମଣିଷର ବିଲୟ ହୋଇଯାଉ, ଏକଥା କେହି କହୁନାହିଁ । ତାର ବଞ୍ଚିବା ପାଇଁ ସେ ନିଜେ ଯଦି ବା ବିଶେଷ କିଛି ଦାୟୀ ନୁହେଁ ଏବଂ ଏବେ ଯେପରି ସେ ବଞ୍ଚୁଛି ତା ଯଦିବା ସେମିତି କିଛି ଶ୍ଲାଘ୍ୟ ନୁହେଁ, ତଥାପି ବଞ୍ଚୁ । ଖାଲି ଜୀବନକୁ ଏତେଟା ଦୁର୍ବହ ନ କରି ଯଦି ଟିକିଏ ହାଲୁକା କରିହୁଏ; ସେଥିପାଇଁ ଏଇଟା ଗୋଟାଏ ପ୍ରସ୍ତାବ ମାତ୍ର । ଭୁଲିଯିବା ଯେହେତୁ ସମ୍ଭବ, ଅନେକ ଜ୍ୱାଳା ଅନେକ ତୀବ୍ର ଦଂଶନ ଭୁଲିଗଲେ ମନ୍ଦ କଣ ? ଯଦି ମନେରଖିଥିବା ସମ୍ଭବ, ତେବେ ରେଖାଏ ମେଘ ବା ପାଗୁଡ଼ାଏ ଫୁଲର ନୀରବ ଆବାହନକୁ ମନେରଖିଲେ କ୍ଷତି କ'ଣ ? ଆମେ ହୁଏତ ପରସ୍ପରକୁ ଭଲପାଇବାକୁ ଚେଷ୍ଟା କରିଆସିଛୁ; କିନ୍ତୁ ଆମେ ପାଖେଇ ଆସିଲେ ଆମର ଅଜସ୍ର ନଖଦନ୍ତରେ ଏପରି ଆଘାତ କରୁ, ଏପରି କ୍ଷତ ବିକ୍ଷତ କରୁ, ଯାହାଫଳରେ କ୍ରୋଧ ବିଦ୍ୱେଷ ହିଁ ମଣିଷ ସମ୍ପର୍କର ଅନିବାର୍ଯ୍ୟ ପରିଣାମ ରୂପେ ଆସି ଠିଆହୁଏ । ଏ ଅସହାୟ କ୍ଷତଗୁଡ଼ିକୁ ଭୁଲିପାଇ ସେଇ ମୌଳିକ ପ୍ରୟାସଟିକୁ ମନେରଖି ପାରିଲେ ଆମ ସଂସ୍କୃତି ଓ ପରମ୍ପରାର କ'ଣ ବିଶେଷ କ୍ଷତି ହୋଇପାଆନ୍ତା ? ଗୋଟିଏ ତୀବ୍ର ଜ୍ୱାଳା ଭୁଲିବା ପାଇଁ ଯଦି ପାଞ୍ଚଟି ବିଶିଷ୍ଟ ସୂକ୍ତ ବା ଐତିହାସିକ ନାମ ଭୁଲିବାକୁ ପଡ଼େ—ଏ ସର୍ତ୍ତରେ ରାଜି ହୋଇଯିବା ଉଚିତ । ଗଣ୍ଠି ପକେଇ ମନେରଖିବା ଆମର ଗୋଟାଏ ଦୁର୍ବିବେଶ୍ୟ ବ୍ୟାଧି । ଏଣୁ ପ୍ରସ୍ତାବ ହେଲ, ଏଣିକ କିଛି ଭୁଲିଯାଉ ।

Digitized by srujanika@gmail.com

# ପାହାଡ଼ଚଢ଼ା

ସାର୍ଚ୍ଚା ଟେନ୍‌ସିଂଙ୍କର ଗୌରଣ୍ଡଙ୍କର ବିଜୟ ପରେ ଜଣେ ବଣିକଧର୍ମୀ କୁଆଡ଼େ ପଚାରିଥିଲେ, "କିଓ ସେ ପର୍ବତ ଉପରେ ସୁନା ଅଛି ନା ରୂପା ଅଛି ? ଏତେ ବାଟ ଏତେ ପରିଶ୍ରମ କରି ଚଢ଼ିବାରେ ଲଭ କ'ଣ ? ଲଭ ନଥିଲେ ଓଲଙ୍କପରି ଏମିତି ଜଣେ କାହିଁକି କଷ୍ଟପାଇବାକୁ ଯିବ ?" ତାଙ୍କୁ ଅବଶ୍ୟ ଉତ୍ତରରେ କୁହାଯାଇ ପାରିଥାନ୍ତା ଯେ, ଧନ ନ ମିଳିଲେ ନାହିଁ, ଯଶ ତ' ମିଳିବ । ପୃଥିବୀର ସର୍ବୋଚ୍ଚ ଶୃଙ୍ଗ ଆରୋହଣ କରିବା କିଛି କମ୍ ଗୌରବର କଥା ନୁହେଁ; କିନ୍ତୁ ଏ କ'ଣ ଯଥାର୍ଥ ଉତ୍ତର ହେଲାବୋଲି ଭାବୁଛନ୍ତି ? ମହାକାଶଗୃର୍ଗ୍ରୀ ଚନ୍ଦ୍ର ଭୂମିର ମରୁପ୍ରାନ୍ତରେ ଓହ୍ଲାଇବା ଉପରେ ଯଦି ସେହି ବଣିକଧର୍ମୀ ମହାଶୟ ପୁଣି ପ୍ରଶ୍ନ କରନ୍ତି, ତେବେ ଆମେ ସେଇଭଳି କିଛି ଉତ୍ତର ଦେଇଦେବା; କିନ୍ତୁ ଯଶ ପାଇଁ କ'ଣ ଆଉ ପ୍ରଶସ୍ତ କ୍ଷେତ୍ର ନ ଥିଲା—କାହିଁକି ମଣିଷ ଗୋଟାଏ ଶୃଙ୍ଗ ଉପରେ ଚଢ଼େ ? ସେ ଜାଣେ ଯେ ତାହା ସହଜ ନୁହେଁ···ସହଜ ନୁହେଁ ବୋଲି ବୋଧହୁଏ ବେଶି ତା'ର ଇଚ୍ଛାହୁଏ । ସେ ଆହୁରି ଜାଣେ ଯେ ସେଥିରେ ଯଶ ମିଳୁ ନ ମିଳୁ ମୃତ୍ୟୁ ହାତବାଡ଼ ଯାଇପାରେ । ତତ୍‌ସତ୍ତ୍ୱେ ସେ କାହିଁକି କମରପଟା ଭିଡ଼ି ବାହାରିପଡ଼େ ଚଢ଼ିବାକୁ ?

ଉଣାଅଧିକେ ସମସ୍ତଙ୍କ ଭିତରେ ଗୋଟିଏ ଲେଖାଁ ଯୋଦ୍ଧା ଲୁଚି ରହିଛି । ତାକୁ ରେଡ଼ିକାର କଲେ ସେ ସହି ପାରେନାହିଁ, କୁଦାମାରି ବାହାରି ଆସେ । ଅପରାଜିତକୁ ଜୟ କରିବାକୁ, ଦୁର୍ଦ୍ଧାନ୍ତକୁ ପରାସ୍ତ କରିବାକୁ ତା'ଭିତରେ ଗୋଟିଏ ବିଜିଗିଷା ସବୁବେଳେ ଜଳୁଥାଏ । ସେ ସଂସାରକୁ ଚାହିଁଲାବେଳେ ତାକୁ ଜଣାପଡ଼େ ଯେ ଚାରିଆଡ଼ୁ ତା' ପାଇଁ ଯୁଦ୍ଧର ଆହ୍ୱାନ ଆସିଛି । ଅଚିହ୍ନା ଅଙ୍କଟାଏ ବା ଗଛ ଶିଖ ଉପରେ ଓହଳିଥିବା ପାଚିଲା ଆମ୍ବଟାଏ ତାକୁ ଚଡ଼େଇଲାପରି, ଚିହାଇ ଦେଲାପରି ମୁଚୁକିମାରି ପଚାରୁଛି, "ହୁଁ ତୁ କ'ଣ ପାରିବୁ ?" ବୁକୁ ଉପରେ ଗୃପୁଡ଼ା ମାରି ଡେଣା ଫୁଲାଇ ପୁରୁଷପଣିଆ ହୁଙ୍କାରିଉଠେ । କହେ, "ମୁଁ ପାରିବି ନାହିଁ ? ମୁଁ ପରା ଆଲେକ୍‌ଜାଣ୍ଡାର୍ ! ମୋତେ କ'ଣ ବୋଲି ପାଇଲୁ କି ?"

Digitized by srujanika@gmail.com

ହରିବଳୟକୁ ମାଡ଼ଯାନ୍ତି ରଣଦୁର୍ମଦ ଗ୍ରୀକ୍ ସୈନ୍ୟ । ମାସିଡନଠାରୁ ଗଙ୍ଗା ପର୍ଯ୍ୟନ୍ତ ସାମ୍ରାଜ୍ୟ ପ୍ରତିଷ୍ଠା ହୋଇଯାଏ । ସେହିଭଳି ଗୋଟାଏ ଅଭିଯାନରେ ଅପରିଜ୍ଞାତ ସମୁଦ୍ରକୁ ପାରହୋଇ ଆମେରିକା ଆବିଷ୍କାର ହୋଇଯାଏ । କୁମେରୁ ସୁମେରୁ ଉପରେ ପତାକା ଦଣ୍ଡ ପୋତାଯାଏ । ଇଟାଲିର ଏକତ୍ରୀକରଣ ହୋଇଯାଏ । ଭାରତ ସ୍ୱାଧୀନ ମଧ୍ୟ ହୋଇଯାଏ । ଏଇଭଳି ନଦୀବନ୍ଧ ଗଢ଼ାହୁଏ । ସମୁଦ୍ରରେ ପୋଲ ପଡ଼େ, ମରୁଭୂମି ଶସ୍ୟ ସମ୍ଭାରରେ ଭରିଯାଏ, ନେପୋଲିୟନମାନେ ଘୋଷଣା କରନ୍ତି ଯେ, 'ଅସମ୍ଭବ' ଶବ୍ଦ କେବଳ କାପୁରୁଷମାନଙ୍କର ଅଭିଧାନରେ ଥାଏ ।

ମନ୍ଦ ନୁହେଁ । ଏଭଳି ପାଗଳବାଲି ପଂଝାଏ ନ ଥିଲେ ଯୁଦ୍ଧ ବିଗ୍ରହ ହୁଅନ୍ତା ନାହିଁ କିମ୍ବା ଦିଗ୍ବିଜୟ ହୁଅନ୍ତାନାହିଁ । ଲଢ଼ିବା ପ୍ରବୃତ୍ତି କିଛି ମନ୍ଦ ନୁହେଁ । ତାକୁ କେବଳ ମଣିଷ ମୁଣ୍ଡ ହାଣିବାରେ ପ୍ରୟୋଗ କରିଗଲେ ଆଜିକାଲି ଆଉ ବେଶି ସମୟ ଲାଗିବନାହିଁ, ଘଣ୍ଟାକ ଭିତରେ ଖେଳ ସରିଯିବ । ତା ନ କରି ବରଂ ଶତ୍ରୁକୁ ବାଛି ଜାଣିଲେ ଯୁଦ୍ଧକୁ ଯୁଦ୍ଧ ହୁଅନ୍ତା, ମଣିଷ ଅଧିକରୁ ଅଧିକ ଶାଖାମେଲ ବଞ୍ଚିପାରନ୍ତା । ଧରାଯାଉ କେନସର୍ ଏକ ଶତ୍ରୁ । ସେଭଳି ଲକ୍ଷାଧିକ ଆଧିବ୍ୟାଧି ଆମର ଶତ୍ରୁ । ଦାରିଦ୍ର୍ୟ ଆମ ଶତ୍ରୁ, ଅଜ୍ଞତା ଆମ ଶତ୍ରୁ, ମହାକାଶ ଆମ ଶତ୍ରୁ । ବନ୍ୟା, ମରୁଡ଼ି, ବାତ୍ୟା ଏ ସମସ୍ତ ଆମର ଶତ୍ରୁ । ଏମାନଙ୍କୁ ଜୟ କରିବା ପାଇଁ ଆମର ସମସ୍ତ ବୁଦ୍ଧିବୃତ୍ତି, ସମସ୍ତ ଧନ ସମ୍ପତ୍ତି, ଶକ୍ତି ସାମର୍ଥ୍ୟ ବ୍ୟୟ କଲାଭଳି ଅବକାଶ ଅଛି । ଖୁବ୍ ଭିଡ଼ାଭିଡ଼ି ଯୁଦ୍ଧ ଅନ୍ତତଃ ଗୋଟାଏ ଶତାବ୍ଦୀ ପାଇଁ ଚାଲିପାରେ । ରଣକଣ୍ଡୁ ମେଣ୍ଟାଇବାପାଇଁ ଏହାଠାରୁ ଆଉ ପ୍ରଶସ୍ତ କ୍ଷେତ୍ର ବା କାହିଁ ?

ଏ ସମସ୍ତ ଗୋଟାଏ ଲେଖାଁ ପାହାଡ଼ ଚଢ଼ା; ସାଧାରଣ ଦୃଷ୍ଟିରେ ଅସମ୍ଭବ ପରି ଦିଶୁଥିବା କୌଣସି ସମସ୍ୟାକୁ ଆୟତ୍ତକୁ ଆଣିବାର ଗୋଟାଏ ବଳଶାଳୀ ପ୍ରକ୍ରିୟା । ଗୋଟାଏ ପ୍ରଖର ଘୋଡ଼ାକୁ ଚଢ଼ିବା, ମହାବଳକୁ ଯନ୍ତାରେ ପୂରାଇ ପୋଷା ମନେଇବା କିମ୍ବା ନାଏଗ୍ରା ପ୍ରପାତ ଉପରେ ତାର ଭିଡ଼ି ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ଚାଲିଯିବାଭଳି ! ଅସାଧ୍ୟ ସାଧନ କଲେ ସାଧୁବାଦ ତ ନିଶ୍ଚୟ ମିଳେ, ତା ବାହାରେ ଏମାନଙ୍କ ଭିତରର ଅସାଧାରଣ ଗୋଟାଏ ବହ୍ନି ଶାନ୍ତ ହୋଇଯାଏ । 'ଯାହା କେହି କରିପାରିବେ ନାହିଁ ତା' ମୁଁ କରିବି, ଏ ଆତ୍ମପ୍ରତ୍ୟୟ ପରିତୁଷ୍ଟ ହୁଏ । ସେମାନେ ଦାମ୍ଭିକ ନୁହନ୍ତି । ନିଜପାଇଁ ବସ୍ତୁତଃ ଗୋଟାଏ ଅସମ୍ଭବ,

Digitized by srujanika@gmail.com

ଅସାଧାରଣ ଯୋଜନା କରିବା ଭିତରେ ସେମାନେ ଅନ୍ୟମାନଙ୍କଠାରୁ ବାରିହୋଇ-ଯାଆନ୍ତି । କାଳସ୍ରୋତରେ ଲକ୍ଷ୍ୟହୀନ ଭାବରେ ଭାସିଯିବା ସେମାନଙ୍କ ଜାତକରେ ନାହିଁ । ସୁଅକାଟି ସ୍ରୋତରେ ବରଂ କିଛି ଗାର ପକେଇଯିବେ । ସେଇଟା ସବୃଦ୍ଧନକୁ ରହିବା ନ ରହିବା ପ୍ରଶ୍ନ ତାକୁ ବିବ୍ରତ କରେନାହିଁ । ସେ ସମତଳ ଧୂଳିଆ ଭୂଇଁରେ ଗୁଳି ଗୁଳି ପାଦରେ ବର୍ଣ୍ଣି ପକାଇବାକୁ ନାରାଜ ! ସେ ଗୁହାନ୍ତି ଇମାର୍ଡ଼ିମା ପଥର ଡେଇଁ କଣ୍ଟାଳିଟା କାଟି ଅହରହ ତଳକୁ ଟାଣି ଧରୁଥିବା ଗୋଟାଏ ଅଦୃଶ୍ୟ ଶକ୍ତି ସାଙ୍ଗରେ ଲଢ଼େଇ କରି ଶିଖରେ ଯାଇ ପହଞ୍ଚିବେ । ପାହାଡ଼ ଚଢ଼ିବା ଗୋଟାଏ ମନସ୍ତତ୍ତ୍ୱ । ଗୋଟାଏ ପ୍ରକାର ମନୋଭାବ । ଏଥିରେ ଆଡ଼ ପଡେଇ ଫୁଙ୍କାର କରୁଥିବା ଗୋଟାଏ ଷଣ୍ଢ ଅହରହ ପ୍ରତିଦ୍ୱନ୍ଦ୍ୱୀଟାଏ ଖୋଜୁଥାଏ । କିଛି ନ ମିଳିଲେ ଭୂଇଁଟାକୁ ଘୁରେଇ ପକାଏ, ରଙ୍ଗମାଟି ଗଦାଟାକୁ ଶିଙ୍ଗରେ ତାଡ଼ ବୁଣି ଦେଇଯାଏ । ଏମାନେ ସାଧାରଣ ଜୀବନରେ ଉଚ୍ଚନୀଚ ଗୁହାନ୍ତି । ସେଇ ଅନୁପାତରେ ନିଜର ବଳ ଖଟେଇବାକୁ ଗୁହାନ୍ତି । ମୋଟ ଉପରେ ଖୋଜୁଥାନ୍ତି ଗୋଟାଏ ପାହାଡ଼ । ପାହାଡ଼ ମଧ୍ୟ ଅଜସ୍ର ମିଳିଯାଏ । ନଚେତ୍ ଗାଙ୍ଗେୟ ଉପତ୍ୟକା ପରି ସମତଳ ଜୀବନଭୂମିରେ ସେମାନେ ଶୂନ୍ୟକୁ କୁଦାମାରି ମାରି ମରିଯାଆନ୍ତେ ।

ସେମିତି ପକ୍କା ଓସ୍ତାଦ୍ ନହେଲେ ପାହାଡ଼ଚଢ଼ାଳିର ମୁହଁ ଅତ୍ୟନ୍ତ ଗମ୍ଭୀର ହେବା ଉଚିତ । ଯଦି ସେ ବହୁବାର ଚଢ଼ି ଓହ୍ଲାଇଥାଏ, ତେବେ ପାହାଡ଼ ପାଦ ଦେଶରେ ଠିଆହୋଇ ଯୁଦ୍ଧକୁ ବାହାରି ହେଉଥିବା ଗୋଲନ୍ଦାଜ ମୁଣ୍ଡାରୁ ଚକୋଲେଟ କାଢ଼ି ଖାଇଲା ପରି ଟିକିଏ ଦୋକଡା ପାଟିକି ପକେଇପାରେ, ଟିକିଏ ସିଗାରେଟ ଫୁଙ୍କି ପାରେ ବା ପାଖରେ କେହି ଥିଲେ ଟିକିଏ ପରିହାସ ମଧ୍ୟ କରିପାରେ । ନ ହେଲେ ପାହାଡ଼ ଶିଖକୁ ସ୍ଥିରଦୃଷ୍ଟିରେ ଗୁହିଁ ଦୁଇ ଗୁରିଥର ଦୀର୍ଘଶ୍ୱାସ ଟେକ ଗ୍ରୁଡ଼ିବା ହେଲା ବିଧି । ଅଣ୍ଟାରେ ଚଉଡ଼ା କମରପଟା, ପାଦରେ ସେମିତି ଟାଣୁଆ ଜୋତା, ଆଖିରେ ସ୍ଥିରତା, ମନରେ ଦୃଢ଼ତା—ସମଗ୍ର ଚେତନାରେ ଗୋଟାଏ ପାହାଡ଼ ପରି ସଙ୍କଳ୍ପ । ଭୁଲି ଜାଣିଲେ ପଥର ପାହାଡ଼ଠାରୁ ଏ ସଙ୍କଳ୍ପର ପାହାଡ଼ ଦଶଗୁଣ ଭାରି । ନହେଲେ ଚଢ଼ାଳିକୁ ଏମିତି ଉପରକୁ ଟେକିନେବା ସମ୍ଭବ ହୁଅନ୍ତା ନାହିଁ ।

ଟାଉ ଟାଉ କେହି କେବେ ପାହାଡ଼ ଚଢ଼େ ନାହିଁ । ପ୍ରତିଥର ପାଦ ପକେଇବା ପୂର୍ବରୁ ଦେଖିବାକୁ ପଡ଼େ । ଏଠି ତ ଆଉ ଗୋରୁ ଶଗଡ଼ ଚଲା ବାଟ ପଡ଼ିନାହିଁ ।

Digitized by srujanika@gmail.com

ନିଜେ ବାଟ କାଟି ଯିବାକୁ ହେବ । ନିଜକୁ ଭିଡ଼ ନେବାକୁ ହେବ । ଟିପଠାରୁ ଶିଖ ପର୍ଯ୍ୟନ୍ତ ସବୁ ଶିର ଟାଣି ହୋଇଯାଆନ୍ତି । ଦେହ ଖଣ୍ଡିକ ଆଉ ଢିଲାବସ୍ତା ନୁହେଁ । ଏଣୁ ପାହାଡ଼ଚଢ଼ାଳି ସବୁ ଜୋର୍ ଲଗେଇ ପାଦ ପକାଇବାରେ ଗୋଟାଏ ଆନନ୍ଦ ପାଏ । ସବୁ ଶକ୍ତି ବିନିଯୋଗ କରିବାର ସୁଯୋଗ କ'ଣ ସବୁବେଳେ ମିଳେ ? ସେ ଭିଡ଼ ହୋଇ ଉପରକୁ ଉଠେ; କିନ୍ତୁ ସେ କେବଳ ନିଜକୁ - ଭିଡ଼ନାହିଁ, ଭିଡ଼େ ଆଉ ଗୋଟାଏ କାହାକୁ, ଯେ ତା' ଅଣ୍ଟାକୁ ଜାବୁଡ଼ିଧରି ଓହଳିଥାଏ । ପାହାଡ଼ ଯେତେ ଉଞ୍ଚ ସେତେ ଭାରି ଏ ଅଦୃଶ୍ୟ ବୋଝ । ବଡ଼ ବଡ଼ ଲୁହା ଜଞ୍ଜିର ପାଦରେ ଆଙ୍କୁଡ଼ା ଲଗେଇ ଓହଳି ଥାଆନ୍ତି । ଶିରି ଉପଶିରି ସବୁ ଯୁଦ୍ଧକରି ଛିଣ୍ଡି ଗଲା ପରି ଲାଗନ୍ତି । ଶେଷରେ ଗୋଟାଏ ପାଦ ଚଢ଼ି ସ୍ଥିର ହୋଇ ଠିଆ ହୋଇଗଲେ ଯେ ଆଉ ଟାଣେ ନାହିଁ । ତେଣିକି ପୁଣି ଆଖି ଉପରକୁ ଚାହେଁ । ପାହାଡ଼ ଶିଖ ମୁରୁକିମାରି ପୁଣି ତାକୁ ଟିହାଇଦିଏ । ଚାବୁକ୍ ଖାଇ ଘୋଡ଼ା ପୁଣି ଚହଟି ଉଠେ । ଚାଲେ ଅଖଣ୍ଡ ଅଭିଯାନ । ଲୋକଙ୍କୁ ଦିଶେ ଯେ ସେ ପାହାଡ଼ ସଙ୍ଗେ ଲଢ଼େ; କିନ୍ତୁ ପାହାଡ଼କୁ ସେ ଭଲପାଏ । ପାହାଡ଼ ନଥିଲେ ନିଜକୁ ଜାହିର୍ କରିବାକୁ ଅନ୍ୟ ଅବଲମ୍ବନ ନାହିଁ ବୋଲି ସେ ବେଶ୍ ବୁଝିଯାଇଥାଏ । ପାହାଡ଼ର ଶିଖ ତା'ପାଇଁ ସଂସାରର ଏକମାତ୍ର ଅମୂଲ୍ୟବସ୍ତୁ । ସେ ଏକ ବନ୍ଧମୀ ରାଜଜେମା, ତାକୁ ମୁକୁଳେଇବାକୁ ଏ କରିବାର ଯୋଦ୍ଧାପଣ କରିଛି ।

କିଛିବାଟ ଚଢ଼ିଗଲେ ଦୃଷ୍ଟି ବେଳେବେଳେ ସେଇ ଏକକ ଶୀର୍ଷବିନ୍ଦୁରୁ ଓହରି ଆସି ଦିଗନ୍ତ ଆଡ଼େ ପହଁରିଯାଏ । ଯେଉଁ ପଡ଼ିଆ ପାରି ହେବାକୁ ଘଡ଼ିଏ ପରିଶ୍ରମ କରିବାକୁ ପଡ଼ୁଥିଲା, ସେଇଟା ଦିଶେ ଥାଳିଆପରି, ଗଛଶିଖ ସବୁ କାହିଁ ତଳେ ଦୋହଲନ୍ତି । ମଣିଷଟିମାନ ପିମ୍ପୁଡ଼ି ପରି । ଏ ହେଲା ଉଚ୍ଚଭୂମିର ନିଶା । ମନମତାଣିଆ ଧରିଯାଏ । ଲାଗେ ଗୋଟାଏ କୋଉଠି ପହଞ୍ଚିଗଲା ନା କଣ । ମନ୍ଦ କଣ ? ଉପରକୁ କାହିଁକି ବା ଚଢ଼ିବ ? ଏପରି ଭାବ ଏଇଠି ରହିଗଲେ କିନ୍ତୁ ପାହାଡ଼ଚଢ଼ାଳି ହାରିଗଲା ବୋଲି ବୁଝିବାକୁ ହେବ । ସେ ନୂଆ ଦିଗନ୍ତରୁ ଦୃଷ୍ଟି ଓହରେଇ ଆଣି ପୁଣି ଶିଖକୁ ଅନାଏ ଏବଂ ପୁଣି ଆଗେଇ ଚାଲେ । ପାହାଡ଼ ଶିଖ ଗୋଟାଏ ଦୁର୍ନିବାର ଆକର୍ଷଣ । ସେ ଉଚ୍ଚଭୂମିର ନିଶା କାଟିପକାଏ । ତା'ଠାରୁ ଆହୁରି ଉଚ୍ଚଭୂମି ଅଛି ବୋଲି ସ୍ପଷ୍ଟ ଭାବରେ ସୂଚେଇ ଦିଏ । ଚଢ଼ାଳି ଯେତେ ଉପରକୁ ଉଠେ, ତା'ର ଦିଗ୍‌ବଳୟ ସେତିକି ବିସ୍ତୃତ ହୋଇ ଚାଲିଥାଏ । ସେଇ ନୂଆ ପାଖୁଡ଼ା ମେଲି ଯାଉଥିବା ଦିଗନ୍ତ ଭିତରେ ଅନେକ ନୂଆ ପାହାଡ଼

Digitized by srujanika@gmail.com

ଶିଖ ଦେଖି ସେ ବିସ୍ମିତ ହୁଏ । ଦୂରରୁ ମୁଣ୍ଡ ଟେକ ଉଠନ୍ତ ନୂଆ ଉଦ୍ଭିଦ, ନୂଆ ପ୍ରାନ୍ତର, ଯାହା ବିଷୟରେ କେବେହେଲେ ସେ ଚିନ୍ତା କର ନ ଥିଲ । ସାର ଦିଗ୍‌ବଳୟରୁ ଅଜ୍ଞାତର ଆମନ୍ତ୍ରଣ । ନିଶା ପୁଣି କଟିଯାଏ, ମନରେ ହତାଶାର ଗ୍ଲାନି ମାଡ଼ିଯାଏ । ସେ ଅନୁଭବ କରେ ଯେ, ଏ ଚଢ଼ନ୍ତ ଭୂମିରେ ପାଦେ ଆଗେଇଲେ ଦିଗ୍‌ବଳୟର ବୃତ୍ତ ଆଉ ଗାରେ ଘୁଞ୍ଚିଯାଉଛି । ନୂଆ ପରିସର ଭିତରେ ଆଉ ଲକ୍ଷ ପାହାଡ଼ ଶିଖରରୁ ଏକଲକ୍ଷ ଆହ୍ୱାନ ତାକୁ ବିହ୍ୱଳ କର ପକାଉଛି, ସେ ଯୋଦ୍ଧାପଣ ଭୁଲିଯାଇ ବିନୟରେ ସାଙ୍କୁଡ଼ି ଯାଏ—କେତେ କ୍ଷୁଦ୍ର ଜୀବଟିଏ ସେ ଏବଂ କେତେ ସୀମିତ ତା'ର ପାରିଲାପଣିଆ । ଏ ବା କ ପାହାଡ଼ ! ଯାହାଠାରୁ ଆହୁରି ଉଚ୍ଚ, ଆହୁରି ଦୁଃସାଧ୍ୟ ଅଜଳନ୍ତ ଲକ୍ଷ ଲକ୍ଷ ପାହାଡ଼ ଅନେଇ ରହିଛନ୍ତି । ଦେଖି ମୁଣ୍ଡ ନଇଁଯାଏ । ବଳେ ଦୀର୍ଘ ନିଃଶ୍ୱାସଟିଏ ବାହାରିଯାଏ—ଉଚ୍ଚଭୂମିର ନିଶା ଏଇଠି ସମ୍ପୂର୍ଣ୍ଣ ଓହ୍ଲେଇଯାଏ ।

ମହାକାଶଚାରୀ ଚନ୍ଦ୍ରରେ ପହଞ୍ଚିଗଲେ ମଙ୍ଗଳ ଅନେଇ ରହେ । ବୁଧ, ଶନିଶ୍ଚର, ବୃହସ୍ପତି ଅନେଇ ରହନ୍ତି । ସୌର ଜଗତର ପରପାରିରୁ ଅନନ୍ତ ମହାକାଶ ଅନେଇ ରହେ, ଆହ୍ୱାନ କରେ । ଚନ୍ଦ୍ର ବିଜୟର ସାଫଲ୍ୟ ଓ ଗର୍ବ ମଉଳିଯାଏ । ଯାହା ସେ ପାଉନାହିଁ ବା ପାରିବ ନାହିଁ, ତାକୁ ସେ ଚାହେ ନାହିଁ । ଜାଣିଶୁଣି ସେ-ଆଡ଼ୁ ଦୃଷ୍ଟି ଫେରେଇ ଆଣି ଯେଉଁ ଟିକକ ସେ ପାରିଛି, ସେଇଠି ଆତ୍ମତୁଷ୍ଟି ଲାଭକରେ । ପାହାଡ଼ ଚଢ଼ାର ଚରମ ମୁହୂର୍ତ୍ତରେ ଅନାବିଲ ଉଲ୍ଲାସ ନ ରହି କେମିତି ଗୋଟାଏ ଉଦାସଭାବ, ଗୋଟାଏ ପ୍ରକାର କ୍ଲାନ୍ତି ଏବଂ ଅବସାଦ ଆସି ଯୋଦ୍ଧାକୁ ଆଚ୍ଛନ୍ନ କରେ ।

ଆଉ ଦଳେ ଅଛନ୍ତି, ଯେଉଁମାନେ କେବଳ ପାହାଡ଼ ଶିଖକୁ ଚାହିଁରହି ଆଗେଇଆନ୍ତି । "ଗିରିଶିଖେ ଲକ୍ଷ୍ୟରଖି ଚାଲିବ ନିକର"—ସେମାନେ ପଣ କରିଥାଆନ୍ତି ଯେ, ଚୂଳରେ ନ ପହଞ୍ଚିବା ପର୍ଯ୍ୟନ୍ତ ଆଉ କୁଆଡ଼େ ଅନେଇବେ ନାହିଁ । ଚଢ଼ିବା ତାଙ୍କର ଗୋଟିଏ ବିଳାସ । ତା'ର ଜ୍ୱାଳା ଯନ୍ତ୍ରଣା ତାଙ୍କର ଉପଭୋଗ୍ୟ । ସେମିତି ଟିକିଏ ନିଜକୁ କଷ୍ଟ ନଦେଲେ ସେମାନେ ଜୀବନର ସ୍ୱାଦ ଅନୁଭବ କରିପାରନ୍ତି ନାହିଁ । ଗିରିଚୂଡ଼ା ତାଙ୍କ ପାଇଁ ଇନ୍ଦ୍ରପଦ ପରି ଶ୍ଳାଘ୍ୟ—ସେମାନେ ଚଢ଼ି ଚଢ଼ି ଯାଇ ଯେତେବେଳେ ସେଇଠି ପହଞ୍ଚନ୍ତି, ଗୋଟାଏ ମୁହୂର୍ତ୍ତ ବିହ୍ୱଳ ହୋଇଯାଆନ୍ତି; କିନ୍ତୁ ପରମୁହୂର୍ତ୍ତରେ ପାହାଡ଼ଚଢ଼ାଳି ଗୋଡ଼ ଯୋଡ଼ିକ ଅଥୟ ହୁଅନ୍ତି ଏବଂ ସେମାନେ ହଠାତ୍ ତୀବ୍ରଭାବରେ ଅନୁଭବ

Digitized by srujanika@gmail.com

କରନ୍ତି ଯେ, ପାହାଡ଼ ଚଢ଼ା ସରିଗଲା । ଏଣିକି ଆଉ ଚଢ଼ି ହେବ ନାହିଁ । ଏ ଶିଖରେ ରହି ମଧ୍ୟ ହେବ ନାହିଁ । ଓହ୍ଲାଇବାକୁ ହିଁ ହେବ । ପାହାଡ଼ ଚଢ଼ାକୁ ଜୀବନର ସବୁ ମୂଲ୍ୟ, ସବୁ ସ୍ୱାଦ ଦେଇଥିବା ଚଢ଼ାଳି ହଠାତ୍ ଅବସନ୍ନ ବୋଧ କରନ୍ତି—"ତା'ହେଲେ ଏଇ ଶୁଖିଲା ନିରସ୍ତ୍ର ବିନ୍ଦୁଟାକୁ ସେ ଏପରି ଖୋଜୁଥିଲେ"—ନ ପହଞ୍ଚିବା ପୂର୍ବରୁ ସେ ଏତେ ଟାଣେ, ପହଞ୍ଚିଗଲେ ସେଇଟା ସତେ ଏତେ ନିରର୍ଥକ !! ବ୍ୟର୍ଥ ବୋଧହୁଏ ତାଙ୍କର ସମସ୍ତ ପ୍ରୟାସ । ସେମାନେ ମୁଣ୍ଡ ତଳକୁ କରି ହୁଏତ ନିରୁତ୍ସାହ ପାଦଯୋଡ଼ାକୁ ଘୋଷାରି ଘୋଷାରି ଆଉ ପାଖ ପୃଷ୍ଠାସ୍ତକୁ ଓହ୍ଲାଇ ଯାଆନ୍ତି ।

କିନ୍ତୁ ବେଳେବେଳେ ଏଇ ପାହାଡ଼ ଏତେ ଉଚ୍ଚ ଯେ, ତା'ର ଚୂଳ ଦିଶେ ନାହିଁ; ଚୂଳ ଅଛି କି ନାହିଁ କେହି କହିପାରିବେ ନାହିଁ; ଏଣୁ କାଳେ ସେଇଠି ପହଞ୍ଚିଯାଇ ପୁଣି ଓହ୍ଲାଇବାକୁ ପଡ଼ିବ ଏ ଆଶଙ୍କା ନ ଥାଏ; ଏଭଳି ଏକ ଅକଳନ୍ତି ପାହାଡ଼ ପିଠିରେ ବିଦ୍ୟା ଅର୍ଜନ କରିଯାଏ । ଏ ପାହାଡ଼ର ଶୀର୍ଷରେ କେହି କେବେ ପହଞ୍ଚି ନାହିଁ; କାରଣ ଏହାର ଶୀର୍ଷ ନାହିଁ—ସେଇଠି ପହଞ୍ଚିବାର ଅବକାଶ ମଧ୍ୟ ନାହିଁ । ବିଦ୍ୟା ଅର୍ଜନ କରିବାଦ୍ୱାରା ଯେତିକି ଜ୍ଞାନ ହୁଏ, ତଦପେକ୍ଷା ଦଶଗୁଣ ଅଧିକ ଅଜ୍ଞାନ ବୃଦ୍ଧି ପାଏ ଧାପେ ଚଢ଼ିଗଲେ ଦିଗ୍‌ବଳୟ ଘୁଞ୍ଚିଯାଇ ନୂଆ ଦିକ୍‌ଚକ୍ରଟାଏ ଫିଟିଯାଏ । ଏବଂ ସେଇଟା ଅଜ୍ଞାନର ପରିଧି । ସେ ବିଷୟରେ ଚଢ଼ାଳି କିଛି ଜାଣିନଥିଲା । ଏଣେ ଧାପେ ନ ଚଢ଼ିଥିଲେ ମଧ୍ୟ ସେ ନୂଆ ଦିକ୍‌ଚକ୍ର ଦିଶିନଥାନ୍ତା । ବହୁ ଶ୍ରମକରି ଜ୍ଞାନ ଅର୍ଜନ ସିନା କରିଯାଏ; କିନ୍ତୁ ସେ ଏକ ବିଡ଼ମ୍ବନା । ଗୋଟିଏ ବିଷୟରେ ଜ୍ଞାନ ହେବା ଅର୍ଥ ଆଉ ଦଶଟି ବିଷୟରେ ନିଜର ଅଜ୍ଞତା ସ୍ୱୀକାର କରିବା । ଏଣୁ ଯେ ଯେତେ ଜାଣେ, ସେ ସେତିକି ଜାଣେ ନାହିଁ —ଜ୍ଞାନ ପାଇଁ ଯେତିକି ପ୍ରୟାସ କରାଯାଏ, ଅଜ୍ଞାନଭୂମି ସେତିକି ବହୁଗୁଣିତ ହୁଏ, ସେତିକି ପ୍ରସାରିତ ହୁଏ । ଶେଷରେ ସମ୍ପୂର୍ଣ୍ଣ ପରାସ୍ତ ହେଲାପରି କହିବାକୁ ପଡ଼େ ଯେ ଅଜ୍ଞାନର ଜ୍ଞାନହିଁ ପ୍ରକୃତ ଜ୍ଞାନ । ଆମେ ଜାଣୁନା, ନ ଜାଣିବା ବିଷୟରେ ସଚେତନ ହେଉ କେବଳ । ଯାହାକୁ ବିଦ୍ୱାନ କହୁଥାଉ, ସେ ବସ୍ତୁତଃ ଏହି କାରଣରୁ ବିନୟୀ ହେବାକୁ ବାଧ୍ୟ । ଆମେ ସିନା ଆମ ଦିଗ୍‌ବଳୟରୁ ତା'ର ଉଚ୍ଚତା ମାପି କହୁ ଯେ ସେ ସକଳବିଦ୍ୟାର ଆଧାର; କିନ୍ତୁ ସେ ଜାଣେ ତା ଦିଗ୍‌ବଳୟ କେତେ ବିସ୍ତୃତ । ସେ ହିଁ କେବଳ ବୁଝେ ଯେ ସେ କେତେ ଜାଣେନା ଏବଂ ଅଜ୍ଞାନର ପରିମାଣ ତା'ର ତଥାକଥିତ ଜ୍ଞାନ ଅପେକ୍ଷା କେତେ ଅଧିକ ।

Digitized by srujanika@gmail.com

ଏଭଳି ଖୁବ୍ ବୁଝେ ବୋଲି ସେ ନିରମି ଯାଏ ବିନମ୍ରରେ, ହୁଏତ ଅବସାଦରେ । ଏଣୁ ବିଦ୍ୟା ଜ୍ଞାନ ଦିଏ ନା ନାହିଁ ହୁଏତ କହିବା କଠିନ; କିନ୍ତୁ ବିନମ୍ର ନିଶ୍ଚୟ ଦିଏ ।

ପାହାଡ଼ଚଢ଼ା ଏକ ଦୁଃସାଧ୍ୟ ଏବଂ ଅନୁପେକ୍ଷ୍ୟ ଆକର୍ଷଣ; କିନ୍ତୁ ସେ ପ୍ରକ୍ରିୟା ଚଢ଼ାଏ ଯେତେ ଖସାଏ ତା'ଠାରୁ ଦଶଗୁଣ । ସେ ଏକ ବିସ୍ମୟକର ବିଡ଼ମ୍ବନା ।

---

Digitized by srujanika@gmail.com

# ଭଜବୁଢ଼ା

ଭଜବୁଢ଼ା ବୁଢ଼ା ନ ହୋଇ ସେ ଆଉ କିଛି ହୋଇଥିବ, ତା' ଆମ ଚିନ୍ତାକ୍ଷେତ୍ରକୁ ପ୍ରବେଶ କରନାହିଁ । ଐତିହାସିକ ଯୁକ୍ତିରେ ଆକବର ବାଦଶାଙ୍କୁ କଳ୍ପନା କରି ବିଶ୍ୱାସ କରିହେଉଛି; କିନ୍ତୁ ଭଜବୁଢ଼ାର ବାଲ୍ୟାବସ୍ଥା ବା ଯୌବନ ବିଷୟରେ ଧାରଣା କରିବା ଭାରି ଦୁଃସାଧ୍ୟ । ଆମେ ଦେଖିଲୁ ଦିନୁ ତା'ର ସ୍ଥୂଳଦାନ୍ତ ଯୋଡ଼ିଏ ନାହିଁ, ଭ୍ରୂଲତା ଅଛି ନା ନାହିଁ କହିବା କଠିନ । ତା'ର କଳା ଚମରେ ବାଳ ଅସ୍ତି ନାସ୍ତି ବିଷୟ ପିଲା ଆଖିକୁ କଣ ସହଜେ ଦିଶନ୍ତା ? ମୁଣ୍ଡଟା ସେ ଶିଖାଯାଏ ଚନ୍ଦା, ଆଉ ପଛକୁ କଅଁଳିଆ ନୁଖୁରା ଦରପାଚିଲା ଗଣ୍ଡେ ବାଳ —ବଢ଼େନାହିଁ, କି ଛିଡ଼େନାହିଁ ଏଥିରେ ଆମେ ନିଃସନ୍ଦେହ । ବୁଢ଼ାର ଦାଢ଼ୀ କେବେ ଗଜାଏ ନାହିଁ, ଅନ୍ତତଃ ତା ପଢ଼ଶାଘରର ହରି ବାରିକ ତାକୁ ଗଜେଇବାକୁ ଦିଏ ନାହିଁ । ସକାଳପହରୁ ଚିକ୍କଣ କରି ମାଠିଦିଏ । ଯେତେବେଳେ 'ଭଜବୁଢ଼ା' ସ୍କୁଲ୍ ପିଅନ । ଖରା, ବର୍ଷା, ଶୀତ ଯାହାହେଉ ନ'ଟା ଅଧେ ବେଳକୁ ମାଟିଆ କୋଟ, ପିନ୍ଧି ବାହାରପଡ଼େ—ଆଣ୍ଠୁ ପାଖରୁ ବେକଯାଏ ସେଥିରେ ଦାଉ ଦାଉ କରୁଥାଏ ବଡ଼ ବଡ଼ ପିତ୍ତଳ ବୋତାମ । ହରି ବାରିକ ବୁଝେ, ଆଉ ତାକୁ ଟିକିଏ ସେବା କରିଦିଏ ! ଫଳରେ ଭଜବୁଢ଼ାର ସୋରିଏ ମୁହଁ ଆଉ କାଇଁଚଗୋଟାକ ପରି ଥୋଡ଼ କେବେ ଅଯନା ରୁମୁରୁମିଆ ଦେଖାଯାଏ ନାହିଁ । ସେ ମୁହଁରେ ସେ ପ୍ରାୟ ହସେ । ହସିଲେ ଉପରପଟ ମାଢ଼ି ଦିଶେ । ଦାନ୍ତ ନଥିବା ସମସ୍ତେ ଜାଣନ୍ତି । ଆଜକୁ ପ୍ରାୟ ତିରିଶ ବର୍ଷ ଧରି ତାକୁ ଜାଣିବା ପରେ ଶୁଣିଲି ଯେ 'ଭଜବୁଢ଼ା' ମରିଯାଇଛି ।

ସ୍କୁଲ୍ ହତାର ବହୁ ବହୁ କଥା ଜୀବନର ଅନ୍ଧକାର ଭିତରେ ମନେପଡ଼େ, ମଝି ପାହାଚ ଆଗକୁ ବିରାଟ ସ୍କୁଲ୍ ଘଣ୍ଟି ! ଟିପେଇ ଠିଆହେଲେ ଆଙ୍ଗୁଠି ଅଗରେ ତାକୁ ଛୁଇଁହୁଏ—ଠେଲିଲେ ଘୁଞ୍ଚେନାହିଁ କି ଟିପିଲେ ବାଜେନାହିଁ । ଓହଳାଟରେ କାଠ ମୁଣ୍ଡିଟାଏ ଥୁଆ ହୋଇଥାଏ । ଭଜବୁଢ଼ା ଘଣ୍ଟା ଗଣି ଏକରୁ ସାତ ପର୍ଯ୍ୟନ୍ତ ପିଟେ । ବାକି ସମୟତକ ପାଖ ଝରକା ଦାଢ଼ରେ ବସି ଘୁମାଏ ।

Digitized by srujanika@gmail.com

ଟିକିଏ ଖୁସ୍‌ଖାସ୍ ହେଲେ ମିଟିମିଟି ଅନାଏ, ପିଲାଙ୍କୁ ଦେଖିଲେ ମୂରୁକି ମାରେ— ମାଷ୍ଟ୍ରମାନଙ୍କୁ ଦେଖିଲେ ସାଙ୍କୁଡ଼ିଯାଏ; କିନ୍ତୁ ସେଇଠି ବସିରହେ ଅଣଷାଠିଏ ମିନିଟ୍ । ଷାଠିଏ ବେଳକୁ ଉଠି ଘଣ୍ଟା ଉପରେ କସି-କସି ପାହାର ପକାଏ । ଆମେ ଭଲପାଉ ସବା ଶେଷର ଲମ୍ବା ଘଣ୍ଟାଟାକୁ । ସେତେବେଳେ ତ ଘୋ କରି ଫେଣାରୁ ମହୁମାଛି ସବୁ ଉଡ଼ନ୍ତି, ଡର ନଥାଏ ଘଣ୍ଟା ଶୁଣିବାକୁ । କେବେ କେମିତି ଦେଖିଲେ, 'ଭଜବୁଡ଼ା' ଆଖିବୁଜା ବିଭୋର ହୋଇ ଘଣ୍ଟା ବାଡ଼ଉଥାଏ । ସେଥିରେ ଆଉ ଜୋର ନଥାଏ । ଘଣ୍ଟାକୁ ଆଉଁସି, ସାଉଁଳି ପିଠିଥାପୁଡ଼େଇ ଯେମିତି ହିନକପାଇଁ ସେ ବିଦାୟ ମାଗୁଥାଏ । ଘଣ୍ଟାଟା ବି ମୋଟା ପୋଷା ବିରାଡ଼ିଟା ପରି ତା' ହାତରେ ଗାଉଁ ଗାଉଁ ଘଉଁ ଘଉଁ ଡାକୁଥାଏ ।

ଭଜବୁଡ଼ା ସତେ ମରିଗଲା, ନା ?

ସେ ଘଣ୍ଟାଟା ପୁଣି ବାଡ଼େଇବ କିଏ ! ସେ ତ ଆଉ କାହା ପୋଷା ମାନିବନାହିଁ । କିଛି ନ ହେଲେ ପଚିଶବର୍ଷ ଧରି ଭଜବୁଡ଼ା ତା' ସାଙ୍ଗରେ ଦୋସ୍ତି କରିଥିଲା । ସେ ତାକୁ ଛୁଇଁଲେ ସେ କଥା କହୁଥିଲା । ଆଉ ସେମିତି କିଏ ତାକୁ ବଜେଇବ ! ଯାଃ ଭଜବୁଡ଼ା ମରିଗଲା,···ହେଲେ ତା' ନାଁରେ ସେ ଘଣ୍ଟାଟା ଆଉ ସେ ସାଉଁଳିଆ ପାଚିଲା କାଠମୁଣ୍ଡିଟାକୁ ଆଡ଼େଇ ଥୋଇଦେଲେ ହୁଅନ୍ତାନାହିଁ ! ସେଇ ଝରକାପାଖ କାନ୍ଥ ଉପରକୁ ଗୋଟିଏ କଣ୍ଟାରେ ଝୁଲୁଥାନ୍ତା ସେ ବିରାଟ କଂସା ଘଣ୍ଟାଟା, ଆଉ ଠିକ୍ ତା' ତଳକୁ ଯୋଡ଼ିଏ କାଠି ଉପରେ ଶୋଇ ରହନ୍ତା ସେ କାଠମୁଣ୍ଡିଟା···ଉଭୟଙ୍କର ଆଉ ବିରୋଧ ନଥାନ୍ତା, ସଂଘର୍ଷ ନଥାନ୍ତା— ନୀରବରେ ସେମାନେ ଭଜବୁଡ଼ାର ତାଜମହଲ ପରି ତା'ର ସ୍ମୃତିକୁ ସମ୍ମାନ ଦିଅନ୍ତେ । ଆଉ ସବାତଳେ ଯେଉଁଠି ଘଣ୍ଟାକର ଅଣଷାଠିଏ ମିନିଟ୍ ସେ ବସି ଢୁମାଉଥିଲା, ସେଇଠି ତାର ପାଚିଲା ଗାମୁଛାଟା ଚଉତି କରି ରଖିଲେ ଆମେ ଦି'ଟା ମଲ୍ଲୀକଳିକ ତା' ଉପରେ ଆସ୍ତେ ଥୋଇଦିଅନ୍ତୁ । ଖରାଦିନ ସକାଳ ସ୍କୁଲ୍ ହେଲେ, ଭଜବୁଡ଼ା ହାତମୁଠାରେ ମଲ୍ଲୀଫୁଲଟି ନାକପାଖରେ ଧରି ଆଖିବୁଜି ବସୁଥିଲା । ଛୁମୁଦାନ୍ତ ନଥିବା ପାଟି ମେଲେଇ ତା'ର ରଙ୍ଗିଲା ଆଖିର ହସ ଆଉ ଦେଖିବାକୁ ମିଳିବନାହିଁ···ଭଜବୁଡ଼ା ଆଉ ଘଣ୍ଟା ପିଟିବନାହିଁ ।

ଏତେଦିନ ବିତିଗଲା । ବୁଡ଼ାଟା ଥରେ ପାଟି ଫିଟେଇ କ'ଣ ହେଲେ କହିଥାନ୍ତା ! ଆମେ ସବୁ କାନ୍ଥରେ ଓଳି ଛୁଇଁ ଦେଖି ବହୁ ଆଗରୁ ସ୍କୁଲରେ ହାଜର ହୋଇଯାଉ । କ୍ଲାସକୁ ଯିବା ମନା, ଆଗ ଦୁଆରେ ବିରାଟ ତାଲା ।

Digitized by srujanika@gmail.com

କଷ୍ଟ ନେଇ ଭଜବୁଢ଼ା ସଡ଼କରୁ ଓହ୍ଲାଏ । ଆମେ ସେତେବେଳେ ସିମେଣ୍ଟ ପିଣ୍ଡାର ଛକ ଦାଡ଼ରୁ ସ୍ଲେଟ୍ ଖଡ଼ ଫୁଙ୍କି ଖେଳୁଥାଉ । ହାରିବା ଜିତିବା ଭୁଲି ବସ୍ତାନି କାଖେଇ ଆମେ ଘେରିଯାଉ ଭଜବୁଢାର ଆଖୁ ଚ୍ଚରିଆଡ଼େ । ସେ ଧଡ଼ଧାଡ଼ କବାଟ ଫିଟେଇ ପେଲିଦିଏ । ଆମେ ତା ଦୁଇପାଖେ ଠେଲି ପଶିଯାଉ ଶିଙ୍ଘାର କରି । ସେ ସେଇଠି ଠିଆହୋଇ ଆମକୁ ଅନେଇରହେ । ନୂଆ ନୁହେଁ, ଭଜବୁଢ଼ା । ଆମେ ଆସିଲାବେଳକୁ ତିରିଶି ବର୍ଷ, ଆଉ ବର୍ଷର ଦୁଇଶହ ଦିନ ସେ ଏମିତି ଦେଖିଆସିଛି । ସେ ସେମିତି ଅଳ୍ପ ମୁରୁକି ମୁରୁକି ଯାଏ ତା' ଘଣ୍ଟା ପାଖକୁ । ଘଣ୍ଟା ବାଜିବାରେ ସେ ତା'ର ସମସ୍ତ ଅନ୍ତରର ଭାଷା ପ୍ରକାଶକରେ । ଭାରି ସରଳ, ସହଜ ସେ ଭାଷା, ତା' ହସପରି ମିଠା ଆଉ ଚକ୍‌କିଆ—ପ୍ରତ୍ୟେକ ଘଣ୍ଟାରେ ସେ ଯେମିତି ଆମକୁ କହେ—"ମୋ ବାପଧନେ ! ଆଜିର ଘଣ୍ଟେ ସରିଲା । ଘରବାହୁଡ଼ା ଆଉରି ଘଣ୍ଟେ ପାଖେଇଲା ।" ଆମେ ବେଶ୍ ବୁଝି ପାଉଥିଲୁ ଆଉ ତାକୁ ଭଲ ପାଉଥିଲୁ ସବୁଠୁ ଅଧିକ ।

ମହା ଦୁର୍ଦ୍ଦାନ୍ତ ଟୋକା ପଦ୍ମନାଭ । ସେ ଦିନେ ମାଡ଼ ଖାଇଲା । ଓଃ କାହାରି ପାଟିକୁ କଥା ପଇଠୁନଥାଏ । ସମସ୍ତଙ୍କ ମୁହଁରୁ ପାଣି ନିଗିଡ଼ିଯାଇଥାଏ । ସ୍କୁଲ କାନ୍ଥ ଗୁଡ଼ାକରୁ ଝିନସାବ ଗୁମୁରୁଥାଏ ବେତର ଚଡ଼ାଳ୍ ଚଡ଼ାଳ୍ ଶବ୍ଦ ଆଉ ପଦ୍ମନାଭର ଅସହାୟ ବୋବାଳି । ମଝିରେ ଥରେ ପାଣିପିଆ ଛୁଟିରେ ଆମେ ଯାଇ ଉଙ୍କିମାରି ଦେଖିଲୁ ଯେ, କନିଅର ଗଛମୂଳେ ଭଜବୁଢ଼ା ତାକୁ ଚନାବାଦାମ ଛଡ଼େଇ ଧରେଇ ଦେଉଚି ଓ ତା' ପିଠି ଆଉଁସି ଦେଉଛି । ମାଡ଼ ଖାଇଲା ପଦ୍ମନାଭ କିନ୍ତୁ ବାଧିଲା ଭଜବୁଢ଼ାକୁ । ସେଦିନ ଆଉ ଦୁଇଥର ଘଣ୍ଟା ବାଜେଇବାକୁ ଥାଏ—ଆମର ଏବେ ମଧ୍ୟ ମନେଅଛି, ସେଦିନର ଘଣ୍ଟାଟା କେମିତି ବେବାଗିଆ ଶୁଭିଥିଲା ।

ସ୍କୁଲ ଛାଡ଼ିବାର ପନ୍ଦର ବର୍ଷ ପରେ ଥରେ ଭଜବୁଢ଼ାକୁ ଦେଖିଥିଲି । ପ୍ରଥମେ ବିଶ୍ବାସ ହେଲାନାହିଁ । ବୁଢ଼ା ସତେ ଏଡ଼େ ଛୋଟିଆ ମଣିଷଟିଏ ନା ! ମୋର ଅଣ୍ଟା ଉପରକୁ ଟିକିଏ ତା'ର ସେ ଚକ୍‌କଣ ମୁହଁ ସୋରିକ—ସେଇ ଛମୁଦାନ୍ତହୀନ ପାଟି ଦେଖି ହଠାତ୍ ଜଣାଗଲା ମୁଁ ସେମିତି ତା'ର ଆଖୁ ଏ ଉଚ୍ଚରେ ଠିଆହୋଇଛି । ମୁଁ ତାକୁ ଚିହ୍ନିଗଲି, ସେ କିନ୍ତୁ ଦୋ-ଦୋ ଚିହ୍ନା ହେଉଥାଏ । ପଗୁରିଲାରୁ ଥଥ-ମମ ହୋଇ କ'ଣ ଦି'ଚ୍ଚରି ପଦ କହିଲା । ଭୟ, ସଙ୍କୋଚ, ସମ୍ଭ୍ରମ ଆଦି ମିଶେଇ ସେ ଚିହ୍ନା ବାବୁକୁ କଣ ବୋଧେ ଗୁହାରିଲା,

Digitized by srujanika@gmail.com

ମୁଁ କିନ୍ତୁ ମନେ ମନେ ଖୋଜୁଥାଏ ସେଇ ମଲ୍ଲୀଫୁଲ ଗୁଞ୍ଚା ମୁରୁକି ମାରୁଥିବା ଭଜବୁଢ଼ାକୁ, ତାକୁ ଆଉ ପାଇଲିନାହିଁ । ବୋଧହୁଏ ସମୟର କାଠଗଡ଼ା ଦେଇ ମୁଁ ବାହାର ଆସିଛି···ତା' ଠାରୁ ଦୂରେଇ ଯାଇଛି । ଭଜବୁଢ଼ା କିନ୍ତୁ ଯେଉଁଠି ସେଇଠି ରହିଯାଇଛି । ତାକୁ ପାଇବାକୁ ହେଲେ ଏଇ ଏକମୁହାଁ ସୁଅରେ ପଛକୁ ପହଁରିଯିବାକୁ ହେବ, ଯେଉଁଠି ସ୍କୁଲର ଭଙ୍ଗାଫୁଟା ପିଣ୍ଡାଟା ହେବ ହାତ-ଗୃହର ଉଚ୍ଚ ଆଉ ସ୍କୁଲର ଘଣ୍ଟା ଉଠିଯିବ ଆକାଶର ଅଧବାଟ । ସେଇଠି ଭଜବୁଢ଼ା ବସି ଢୁଳଉଥିବ—ତା ପାଖରେ କିଛି ନକହି ଖୁସ୍‌ଖାସ୍ ହେଲେ ସେ ଆଖି ମେଲେଇ ମୁରୁକି ମାରିବ ! କିନ୍ତୁ କାହିଁ ?—ପାଣି ଧାରରେ ସିନା ଲେଉଟି ହେବ, ସମୟ ଧାରରେ ନୁହେଁ ।

ଭଜବୁଢ଼ା ଯେମିତି ଆଖିବୁଜି ଘଣ୍ଟା ବାଡ଼ାଏ, ସେମିତି ଆଖି ବୁଜି ପିକା ଟାଣେ; କିନ୍ତୁ ସ୍କୁଲ ଭିତରେ କେବେ ନୁହେଁ । ସବୁ କାମ ସାରି ଘରକୁ ଫେରିଲେ ବୁଢ଼ା କୋଟ୍ ଓହ୍ଲେଇ ରଖିଦିଏ ଆଉ ଦୁଇ ଆଣ୍ଠୁ ଉପରେ ଥୋଡ଼ିଟିକୁ ଥୋଇଦେଇ କାନ୍ଥକୁ ଆଉଜି ବସିଥାଏ । ଏଇଟା ତା'ର ପିକା ଟାଣିବା ବେଳ । ଶାଳପତ୍ରରେ ମୋଡ଼ ମୋଡ଼ ଗୋଟାଏ ଅଧହାତିଆ ପିକା ତିଆରି ହୋଇଥାଏ । ବୁଢ଼ା ସେଥିରେ ଜୁଇ ଲଗାଇ ଭୋଳହୋଇ ଆସ୍ତେ ଆସ୍ତେ ଟାଣେ । ତା' ମୁହଁ ପାଖରେ ଧୂଆଁ ପହଁରେ, ସେ ଆଖିବୁଜି ତା' ଭାବ ନିଏ ।

ତାକୁ ଏମିତି ବିଳାସ କରୁଥିବାବେଳେ ଥରେମାତ୍ର ଦେଖିଛି । ସେ ଆଉ ଗୋଟାଏ ଦିନର କଥା ।

କମଳଲୋଚନ ପାଠଗୃହର—କଚ୍ଛିହିନ୍ ଧର ଏ ଅଦ୍ଭୁତ ବିଦ୍ୟାରେ ମୋର ଗୁରୁ । ଯେଉଁ କେତେଜଣ ମାତ୍ର ନିୟମରେ ଭାରି କଡ଼ା ଲୋକ, ସେମାନଙ୍କ ପାଇଁ ଏଇଟା ମର୍ଷିଷମାରୁ ଅପରାଧ । ସାତବର୍ଷର ପିଲା ଯଦି ପାଠଗୃହର ହେଲା, ତାକୁ ଆଉ କ୍ଷମା ନାହିଁ । ଏଥିପାଇଁ ତାକୁ ପ୍ରାଣରେ ନ ମାରି ମଜବୁତ କାଠଫାଳିଆରେ ଶହେ ପାହାର ନୋଳା ଫଟେଇ ପିଟା ଯାଇପାରେ । ଏ ଭୟଙ୍କର ଫଳପ୍ରାପ୍ତି ଥିଲେ ସୁଦ୍ଧା ସବୁବେଳେ ଗଣ୍ଡେ ପାଠଗୃହର ଥାଆନ୍ତି । ଆମେ ମଧ୍ୟ କଚ୍ଛିହିନ ସେ ଦୀକ୍ଷା ନେଇଥିଲୁ । ଖାଇପିଇ ଘରୁ ବାହାରିପଡ଼ିଲେ ସମସ୍ତେ ଜାଣିଲେ ଯେ ପାଠପଢ଼ି ଗଲୁ; କିନ୍ତୁ ଅଧବାଟରେ ଜଗିଥାନ୍ତି କମଳଲୋଚନ । ସେ ଆଉ ପାଠପଢ଼ା ଧନ୍ଦାରେ ନ ପୂରେଇ ଦେଖେଇ ଦିଅନ୍ତି ସରଳ ବାମପନ୍ଥା । ଗୋଟିଏ କଆବୁଦା ଭିତରେ ବହିବସ୍ତାନି ଘର ଓହ୍ଲେଇଦେଇ ଆମେ ବାହାରିପଡ଼ୁ

ଗୋଟାଏ ଦିନର ସ୍ୱେମାଞ୍ଚ ପାଇଁ । ସାରା ଦ୍ୱିପ୍ରହର କଟିଯାଏ ସ୍ୱାଧୀନ ଆନନ୍ଦରେ । ଏଇ ସମୟରେ ପାଟିକର ଗୀତ ବୋଲୁ—ଇଚ୍ଛାହେଲେ ଧାଉଁ, ଇଚ୍ଛାହେଲେ ଗଛମୂଳେ ଶୋଇଯାଉ, ନ ହେଲେ ତ ଇଚ୍ଛାହେଲେ ହସୁ । କେବଳ ଅକାରଣ ହସିବାଟା ସେତେବେଳେ ଗୋଟାଏ କାମ ଥାଏ; କିନ୍ତୁ ଶିଖିଛୁ ମଧ୍ୟ ବହୁତ କଥା, ଯାହା ପୋଥିରେ ନାହିଁ । ଶିମୂଳ ଉଡ଼ା ସମୟର କେମିତି ତୂଳା ପବନରେ ପହଁରେ···ନେଳୀ ଆକାଶରେ ସେତେବେଳେ ମାଛିଆଚିଲ କୁରୁଳୁଥାଏ, ଭଉଁରୀ କାଟୁଥାଏ—ତଳେ ଝିକମିକ ପଥରଗୁଡ଼ାକ ନିଝୁମ ଦ୍ୱିପ୍ରହର ଖରାରେ ଜଳୁଥାନ୍ତି । ଆମେ ଜାଣୁ କାଚଡା କେମିତି ଗୋଡ଼ ଗୋଟାଏ, ଭେଜକୁମ୍ଭାଟୁଆ କେମିତି ଡାକେ, ଗୋବରପୋକ କେମିତି ଗୋଟାଳ ଗଡ଼େଇ ଗଡ଼େଇ ନିଏ—ଆମେ ଜାଣୁ ଆକାଶମଛୀ ଫୁଲକୁ ଫୁଙ୍କିଲେ ବାଜେ, ତାକୁ ଆମେ କହୁ ଟିପି ଫୁଲ—ଆମେ କଙ୍କି ଦେଖିଲେ କହିଦେବୁ ସେଇଟା ରଜା ନା ରାଣୀ—ଆଉ ସେଥିରୁ କାହା ମୁଣ୍ଡ ମାଟିରେ ପୋତିଲେ କଉଡ଼ି ବାହାରିବ···ଏପରି ଅନେକ କଥା । ଏ ସବୁ ଗୁଡ଼ାଲେ ଭଜବୁଢ଼ା ଲମ୍ବା ଘଣ୍ଟି ବଜେଇଲା ପର୍ଯ୍ୟନ୍ତ । ତା'ପରେ ସୁଶୀଳ ବାଳକ ପରି ବସ୍ତାନି କାନ୍ଧରେ ପକେଇ ଘରମୁହାଁ ।

ସେଦିନ ଫେରିଲାବେଳକୁ ସାମାନ୍ୟ ଡେରି ହୋଇଗଲା । କାରଣ ଗୁରୁଙ୍କୁ ହଠାତ୍ ଦୃଶ୍ୟ ହେଲା ଯେ, ପୋଖରୀରୁ ପାଣି କାଟି ଯେଉଁ ନାଳଟା ସ୍କୁଲହତା ପଛପଟେ ଯାଇଛି, ସେଇଠି ଗୋଟାଏ ଜାଗାରେ ପୋଲ୍ହୁ ବସିଛି ଏବଂ ସେଥିରେ ମାଛ ଥିବେ । ଅଗତ୍ୟା ଯିବାକଥା । ଗଲୁ; କିନ୍ତୁ ଗୋଟିଏ ଖୁଦ୍ ଶଙ୍ଗୁଡ଼ି ମଧ୍ୟ ପାଇଲୁ ନାହିଁ । ବୁଲାଣି ବାଟଦେଇ ଫେରୁଛୁ, ହଠାତ୍ ଦେଖିଲୁ ଭଜବୁଢ଼ା ମେଲା ଦେହରେ କାନ୍ଥକୁ ଆଉଜି ପିକା ଟାଣୁଛି । ମୁଁ ତାକୁ ସେଇ ରୂପରେ ଦେଖିବା ତାହା ପ୍ରଥମ । ଥମିଗଲି । ଭଜବୁଢ଼ା ଧୂଆଁ ପଛରୁ ଆଖି ମେଲେଇ ବୋଧେ ଗୁହିଁଲା, ତା'ପରେ ପିକାଟାକୁ ଆଡ଼େଇ ଦଳିକରି ଅନେଇଲା । ତାକୁ ଟିକିଏ ଆଖି ଆଖି ମିଟିମିଟି କରି ହସିଦେଲା କିନ୍ତୁ ସେଇଟା ତାର ସାଧାରଣ ମୁଚକିମାରି ହସ ନୁହେଁ । ସେଥିରେ ଥିଲା ମେମିତି ଗୋଟାଏ ସଙ୍କେତ ଭାବ । ହଠାତ୍ ଜଣାଗଲା, ମୋତେ ସେ କହୁଛି—"ତୋ ଦେଇ ପାଠ ହବନାହିଁ । ତୁ ବାପା ଏ ବଦ୍ୟା ଗୁଡ଼ ପୁଞ୍ଜାଏ ଗାଈ ଜଗିଲେ ହୁଅନ୍ତା ନାହିଁ ? କାହିଁକି ଏମିତି ସମସ୍ତଙ୍କୁ ଠକି ଲୁଚି ଲୁଚି ବୁଲୁଛୁ । ହେଲା, ତୁ କଣ ଭାବୁଛୁ ସମସ୍ତଙ୍କର ପାଠ ହେଇଯିବ ?" ଏ ନୀରବ ଜିଜ୍ଞାସ ମୁଁ ପରିଷ୍କାର ଶୁଣିଲି, ଆଉ ଚେଲୁଳ ପରି

Digitized by srujanika@gmail.com

ପଡ଼ିଗଲି । ମୋ ପାଦତଳ ମାଟି ଭିତରୁ କେହି ଯେମିତି କହିଲା—'ପାଠଶ୍ରୀର' 'ପାଠଶ୍ରୀର' ଆଜି ମଝିଶିରି ହାଡ଼ ସେଥିରେ ବରଡ଼ାପଣ ପରି ଥରିଲି । କେତେବେଳକେ ସେଇଠୁ ଗୋଡ଼ କାଢ଼ି ବାହାରିଲି । ସେହିଦିନଠୁ କମଳ ଲୋଚନଙ୍କ ବାମପନ୍ଥା ଆଉ ସୁହାଇଲା ନାହିଁ ବରଂ ସବୁଦିନ ଦଶଟାବେଳେ ଭଜବୁଢ଼ାର ସାବାସି ଦେଉଥିବା ହସ ଟିକକ ପାଇଁ ଆଗରୁ ଯାଇ ପୋଥିପତ୍ର ସହିତ ସ୍କୁଲ୍ ପିଣ୍ଡାରେ ଅଧିଆ ପଡ଼ିବାକୁ ପ୍ରାଣପଣେ ଚେଷ୍ଟା ଚାଲିଲି ।

ଭଜବୁଢ଼ାର ଲମ୍ବା ଘଣ୍ଟି ବାଜଯାଇଛି···ତାକୁ ଆଜି ଏଠି ରୋକିବା କଷ୍ଟ । ସେ କାଳୁ ବନେହେଲେ କାମରୁ ଲୁଚିନାହିଁ—ଥରେହେଲେ ହେଳା କରିନାହିଁ ନିୟମରେ । ଯଦି ସେପାରିରେ ପରୀକ୍ଷା ହେଉଥିବ, ତେବେ ବୋଧହୁଏ ଭଜବୁଢ଼ାର ନମ୍ବର ରହିବ ସବୁଠୁ ବେଶି ।

Digitized by srujanika@gmail.com

# ଅବଶେଷାନୁଚିନ୍ତା

ଅନେକ ସମୟରେ ମନେହୁଏ ଯେ, ପ୍ରତ୍ୟେକ ପ୍ରଶ୍ନର ଶେଷରେ ଯେପରି ଗୋଟିଏ ଦୁର୍ଜ୍ଞେୟ ଅବଶେଷ ରହିଯାଏ । ସେହିପରି ଜୀବନକୁ ଅହରହ ବ୍ୟୟ କଲାପରେ ମଧ୍ୟ ଗୋଟିଏ ଅତୃଷ୍ଣା ଅବଶେଷ ବୋଧହୁଏ ରହିଯାଏ ।

ଜୀବନକୁ ତ ବୁଝି ହୁଏ ନାହିଁ ! ଜନ୍ମ ଏବଂ ମୃତ୍ୟୁ ପରି ଦୁଇଟି ରହସ୍ୟ-ବିନ୍ଦୁ ମଝିରେ ଧୂମରେଖା ପରି ପ୍ରସାରିତ ହୋଇଥିବା ଏ କିଂଭୂତ ପଦାର୍ଥଟି ସତେ କ'ଣ ?—ଏହା କେଉଁ ଉପାଦାନରେ ତିଆରି ?—ଦିକ୍‌କାଳ ଏବଂ ସେମାନଙ୍କର ଇନ୍ଦ୍ରିୟାନୁଭବ୍ୟତାକୁ ଅପେକ୍ଷା କରୁ ନଥିବା କିଛି ବିଶେଷ୍ୟ ଏଥିରେ ଅଛି କି ?—ବୁଝାପଡ଼େ ନାହିଁ । ଆହୁରି ଗୂଢ଼ରେଖି ଚାହିଁଲେ ମନେହୁଏ ଯେ ଏ ଧୂମରେଖାର ପ୍ରତ୍ୟେକ କଣିକାରେ ସେଇ ଜନ୍ମ ଓ ମୃତ୍ୟୁ ରହସ୍ୟ ମିଶ୍ରି ରହିଛି । ସତେ ବା ଜନ୍ମ ମୃତ୍ୟୁର ଅଦ୍ଭୁତ ସମାହାର ଶୂନ୍ୟ ହୋଇ ନ ଯାଇ ଜୀବନର ଉପାଦାନ ରୂପେ ତାକୁ ଧାରଣ କରିଛି । ପ୍ରତିଟି ମୁହୂର୍ତ୍ତରେ ଜନ୍ମ ଓ ମୃତ୍ୟୁ ଉଭୟ ସମାନୁପାତରେ ସଂଘଟିତ ହୋଇ ଚାଲିଛି । ଗୋଟିଏ ହୁଏ ତ ଗତି ପାଇଁ ପ୍ରରୋଚିତ କରୁଛି ଏବଂ ଅନ୍ୟଟି ତାକୁ କୌଣସି ଏକ ନିସ୍ତରଙ୍ଗ ସ୍ଥିତିରେ ସମାହିତ କରିବାକୁ ଧରିରଖୁଛି । ଫଳରେ ଜୀବନଟି ଗୋଟିଏ ପବନପରି ପ୍ରବହମାନ ଧାରା ବା ଅବିଚଳିତ କିଛି ଗୋଟାଏ ଆକାଶବତ୍ ସ୍ଥିତି, ତା ଜାଣିହୁଏ ନାହିଁ ।

ତାକୁ ଆଉ ବାଗେ କହିଲେ—ଯାହା ଚଳମାନ ପରି ଦିଶେ, ତାକୁ ଜୀବନ କହିବା, ନା ଯାହା ଅବିକମ୍ପିତ ଥିଲା ପରି ଅନୁମିତ ହୁଏ, ତାକୁ ଜୀବନ କହିବା; ନା ଉଭୟଙ୍କୁ ଧାରଣ କରି କୌଣସି ସ୍ଥିର କେନ୍ଦ୍ର ଚାରିପଟେ ଘୂର୍ଣ୍ଣାୟମାନ ବୃତ୍ତରେଖା ପରି ଗୋଟାଏ କିଛିକୁ ଜୀବନ କହିବା ?...ଏ ମୌଳିକ ପ୍ରଶ୍ନ ଉପରେ ଶାସ୍ତ୍ର ଓ ଶାସ୍ତ୍ରବିତ୍ ଉଭୟେ ମୁଖର । ଲକ୍ଷେ ଶାସ୍ତ୍ର, ଲକ୍ଷେ କଥା । ଏଣୁ ସେମାନଙ୍କ ଜରିଆରେ ଜୀବନକୁ ନ ବୁଝି, ତାକୁ ବରଂ ଖୁବ୍ ତୀବ୍ର ଏବଂ ଗମ୍ଭୀର ଭାବରେ ବଞ୍ଚିବାକୁ ବୁଝିବାକୁ ଚେଷ୍ଟାକରିବା ଟିକିଏ ସହଜ; କିନ୍ତୁ ଯେତେ ଯାହା କଲେ ମଧ୍ୟ ଏ ରହସ୍ୟ ଆଉ ଫିଟୁନାହିଁ । ପଥର ଗୋଟାକଟିଏ ପରି ତାକୁ

Digitized by srujanika@gmail.com

କେବଳ ଗଡ଼ାଇବା କଥା । ତା ଗର୍ଭ ଭିତରର ରହସ୍ୟ ଜାଣିବା ସହଜ ନୁହେଁ । ଜଣା ପଡ଼ନ୍ତା ଯଦି କେହି ତାକୁ ହାତୁଡ଼ିରେ ଚୂର୍ ଦିଅନ୍ତା; କିନ୍ତୁ ତା'ପରେ ତାକୁ ଜାଣିବାକୁ କେହି ରହିବେ ନା !!

ଏ ପ୍ରସଙ୍ଗକୁ ଅଗତ୍ୟା ଏପରି ଅଧାପନ୍ତରିଆ ଛାଡ଼ି, ଆସନ୍ତୁ ସେଇ ମୂଳ ଇଙ୍ଗିତକୁ ଯିବା । କୌଣସି କାରଣରୁ ସମସ୍ତ ସମସ୍ତରେ ମନେହୁଏ ଯେ, ଜୀବନକୁ ଅହରହ ବ୍ୟୟ କଲାପରେ ମଧ ଗୋଟିଏ କିଛି ଅଚ୍ଛିଣ୍ଡା ଅବଶେଷ ରହିଯାଇଛି । ଆଞ୍ଜୁଳାଏ ଜୀବନ ଧରି ଆମେ ଯେତେବେଳେ ଏ ସଂସାର ଭିତରକୁ ଆସୁ, ପ୍ରଥମେ ବାଟ ଜଗି ଠିଆହୁଏ ଆମର ଓ ଶରୀର । ତାର ବିଭିନ୍ନ କେନ୍ଦ୍ରରେ କ୍ଷୁଧା, ବିଭିନ୍ନ କେନ୍ଦ୍ରରେ ତୃଷ୍ଣା ! କିନ୍ତୁ ଉପସ୍ଥାନ୍ଧକୁ ଆହୁତିଏ ଲେଖା ଦେଇ ଆଗେଇ ହେଇଗଲାବେଳକୁ ଶରୀରର ଚିତ୍କାର ଶୁଭେ—"ଆରେ ଯିବୁ କୁଆଡ଼େ ? ମୋତେ ସଙ୍ଗରେ ନେଇଯିବାକୁ ପଡ଼ିବ । ମୋତେ ପରିତୃଷ୍ଟ କଲାପରେ ଦେଖିବା ତୋର ଆଉ କିଛି ବଳକା ରହୁଛି କି ନାହିଁ । ମୋତେ ଦରକାର ଖାଦ୍ୟ, ଦରକାର ବିଳାସ, ଦରକାର ନିଦ୍ରା । ମୋର ପ୍ରାଣକେନ୍ଦ୍ରରେ ଆବେଗ ସମ୍ଭୋଗର ତୃପ୍ତି ପାଇଁ, ମନରେ ସହସ୍ର କୋଟି କାମନାର ତୃପ୍ତି ପାଇଁ ତୁ' କଣ କରୁଛୁ ଶୁଣେ ।"କିନ୍ତୁ ନାଟକୀ ହୋଇ ଶୁଣେ ଏବଂ ସେଇଠି ରହିଯାଏ । ମନିଷ କହେ, "ରହ, ମୋତେ ଆହୁରି ଗୋଟାଏ କ'ଣ ବିର୍‌ବଳୟ ଦିଶୁଚି, ମୁଁ ସେଇଠି ବ୍ୟୟ କରିବାକୁ ଚାହେଁ ।" ଶରୀରର ହାଉ ହାଉ ପ୍ରତିବାଦକୁ କାନ ନ ଦେଇ ସେ ପରିବାର ପୋଷଣ କରେ, ସମାଜ ପୋଷଣ କରେ, ରାଷ୍ଟ୍ର, ଧର୍ମ ଏବଂ ନାନା ପ୍ରକାର ଗୋଷ୍ଠୀ ପୋଷଣ କରେ । ଏ ସମସ୍ତ ଗୋଟାଏ ପ୍ରଚଣ୍ଡ ଅଗ୍ନିକୁଣ୍ଡର ସହସ୍ର ଶିଖା । ଯଥାସମ୍ଭବ ଏମାନଙ୍କୁ ପରିତୃପ୍ତ କରିବାକୁ ସେ ବହନ କରିଚାଲେ ନିଜ ଜୀବନକୁ । ପାହରୁ ହବ୍ୟ ସରିଆସେ । ତଥାପି ତା' ଚାରିଆଡ଼େ ଏ ସହସ୍ର ଶିଖା ବହ୍ନି ତାକୁ ଦାବି କରି ଚାଲିଥାଏ, "ଦେ, ଦେ, ମୁଁ ଖାଇବି !" ଶେଷକୁ ପାହରେ ହବ୍ୟ ପରିବର୍ତ୍ତେ ରହିଯାଏ ଟିକିଏ ସ୍ନିଗ୍ଧତା ଏବଂ ଶୁଭ୍ର ହୋଇଯାଏ ଶିଥିଳ । ବହ୍ନିଆଁର ନିଆଁ ଚହଟି ଆସି ପାତ୍ରକୁ ମଧ ଗ୍ରାସ କରିଯାଏ । ବାହାରକୁ ଦିଶେ ଯେ ପର୍ଣ୍ଣପୁଷ୍ଟ ଶୋକାର୍ତ୍ତ ହୋଇ ଅଶ୍ରୁରେ ଲେଟିଯାଉଛନ୍ତି ବା ଅଜସ୍ର ଫୁଲଭାରରେ ରାଷ୍ଟ୍ର ପୋତି ପକାଉଛି ।

ଏ ପର୍ଯ୍ୟନ୍ତ ହୁଏତ ଗୋଟିଏ କିଛି ନିର୍ଦ୍ଦିଷ୍ଟ ରୂପ କ'ଣ ଦିଶୁଛି । ଏଇଠି ବାନ୍ଧି ବାନ୍ଧି ଯଦି ଆଞ୍ଜୁଳାକ ଜୀବନ ସରିଗଲା ଏବଂ ଏପରି ନିଃଶେଷ ନିରବଶେଷ

Digitized by srujanika@gmail.com

ହୋଇ ସରିଗଲା, ତେବେ 'ଫେର୍' ଗୋଟାଏ ଆସିଲା କାହୁଁ ?—ଏ ତ କେବଳ 'ଫୁର୍ !!'

ତଥାପି ମନେହୁଏ ଯେ, ହବନ ସରିଗଲେ ମଧ୍ୟ ହୋତା କେଉଁଠି ହୁଏତ ଅବଶେଷ ରହିଯାଏ । ତାର ସ୍ୱରୂପ ଚିନ୍ତାକଲେ କିଛି ଦିଶେ ନାହିଁ, କିଛି ଜଣା-ପଡ଼େନାହିଁ । ଜାଣିବାକୁ ହେଲେ ପୃଥକ୍ ରହିବାକୁ ହୁଏ, ନା ଏକୀଭୂତ ହେବାକୁ ହୁଏ ତା' ବି ଜଣାପଡ଼ୁନାହିଁ । ଏଇଠି ବୃହଦାରଣ୍ୟ ଶ୍ରୁତି, କାଳ, ଶାସ୍ତ୍ର, ଗୁରୁ ସମସ୍ତେ ଏକସ୍ୱରରେ କ'ଣ କହୁଛନ୍ତି ! ହଠାତ୍ ମନେହୁଏ ଯେ ଚରାଚରକୁ ପରିବ୍ୟାପ୍ତ କରି ଅଖଣ୍ଡମଣ୍ଡଳାକାର କିଂଭୂତ ସ୍ଥାଇଟାଏ କ'ଣ ଦିଶୁଛି । ପରମୁହୂର୍ତ୍ତରେ ଦିଶୁଛି ଯେ ପ୍ରଚଣ୍ଡ ବହ୍ନିମାନ ଶିଖା ଗ୍ରହତାରାଙ୍କୁ ଗ୍ରାସକରି ବ୍ୟୋମ ଭେଦକରି ବିଦ୍ୟମାନ । କୋଟି କୋଟି ବିଶ୍ୱ କେବଳ ଏକ ପାଦ 'ବ୍ୟକ୍ତ' ମଧ୍ୟରେ ହିଁ ସୀମାବଦ୍ଧ । ବାକି ଅବ୍ୟକ୍ତ ତ୍ରିପାଦ ମାନସଗୋଚର ନୁହେଁ ।

କୌତୁକ ପରି ଲାଗେ ଯେ, ତା ହେଲେ ଏଇ ମହାଶୂନ୍ୟ ହିଁ ସେଇ ଅଦୃଶ୍ୟ ହୋତା !! ଏତ ସ୍ୱୟଂ ମହାବହ୍ନି । ନିହାରିକା ପରି ଲମ୍ବମାନ ସହସ୍ରଶିଖା ତାଙ୍କର ଭୁଜପଟଳ । ସେ ସେଥିରେ ଜୀବନ ଧର୍ମର ଧ୍ରୁବ ତୋଳି ନିଜେ ନିଜ ମୁଣ୍ଡରେ ବହନ କରୁଛନ୍ତି !! ତା' ହେଲେ, ଜୀବନର ଚୂଡ଼ାନ୍ତ ବ୍ୟୟ ପରେ ଯାହା ଅବଶେଷ ରହିଯାଏ, ତାହା କ'ଣ ଏଇ ? —ଗଣିତଶାସ୍ତ୍ରର ପଣ୍ଡିତବର୍ଗ ହୁଏତ କହିବେ ଯେ, ଭାଗଶେଷ ଭାଜ୍ୟର ଏପରି ଏକ ଅଂଶ, ଯାହା ଭାଜକକୁ ସୁଦ୍ଧା ପୂର୍ଣ୍ଣ ଧାରଣା କରିପାରେ ନାହିଁ । ଏଠି କିନ୍ତୁ ଭାଗଶେଷଟି ଏତେ ବିରାଟ ଯେ ଭାଜ୍ୟ ଭାଜକ ଭାଗଫଳାଦି ସମଗ୍ର ଭାଗକ୍ରିୟା କେଉଁ ଏକ ବିନ୍ଦୁରେ ତା ଗର୍ଭରେ ଅବଲୁପ୍ତ, ତାହା ଖୋଜି ନିର୍ଣ୍ଣୟ କରିବା ସହଜ ନୁହେଁ । ଏହି ଅପରିମେୟ ଅବଶେଷ ଲୀଳାନ୍ୱିତ ହେଲେ ଭାଜକ ଭାଜ୍ୟାଦିରେ ପ୍ରକଟ ହୁଏ । ଅନନ୍ତ ଭାଗଶେଷ ପାଇଁ ଅନନ୍ତ ଭାଜକ, ଭାଜ୍ୟ ଓ ଭାଗଫଳ; ଅନନ୍ତ ଏ ବିଭାଜନର ପ୍ରକ୍ରିୟା !! ସବସ ସେଇ ଅଖଣ୍ଡିତ ଅନନ୍ତ ସତ୍ତା ବିଭିନ୍ନ ସଂଜ୍ଞାର ଛାୟାରେ ପ୍ରତିବିମ୍ବିତ ମାତ୍ର । ଏଣୁ ଗାଣିତିକ ମୂଢ଼ତାରେ ତାକୁ ଏପରି ବହୁଧା ନ ଦେଖି ଏକତ୍ୱରେ ଅନୁଭବ କଲେ ହୁଅନ୍ତାନାହିଁ ? ଆପଣ ଏଇଠି ହୁଏତ ପଚାରିବେ ଯେ—କିଏ କାହାକୁ କିପରି ଅନୁଭବ କରିବ ? ବୋଧହୁଏ ଭାଜକର କର୍ତ୍ତୃତ୍ୱରୁ ଭାଜ୍ୟର ଉଦାସୀନତା ଦେଇ ଭାଗଫଳର ଶୁଦ୍ଧତା ମାଧ୍ୟମରେ ଭାଗଶେଷ ପର୍ଯ୍ୟନ୍ତ ଝରି ଯାଇ ପାରିଲେ, ସେଥିରେ ସମାହିତ ହୋଇପାରିଲେ, ଏହା ସମ୍ଭବ ହୋଇପାରେ !

Digitized by srujanika@gmail.com

# ନିଜକୁ ନାସ୍ତିକ ମନେକରି

ବିଶ୍ୱାସରେ ବାଧ୍ୟବାଧକତା କିଛି ନାହିଁ । ବିଶ୍ୱାସ କରିବା ଯଦି ଏକ ସ୍ୱଚ୍ଛନ୍ଦ ସହଜ ଏବଂ ସ୍ୱାଧୀନ ଅଧିକାର, ବିଶ୍ୱାସ ନ କରିବା ମଧ୍ୟ ତଦ୍ରୂପ ଏକ ଅଧିକାର । ଜଣକର ମନ ହେଲା ତ ସେ ବିଶ୍ୱାସ କଲା । ନ ହେଲା ନାହିଁ । କେହି କାହାକୁ ଏ ବିଷୟରେ ବାଧ୍ୟ କରି ପାରିବେ ନାହିଁ । ତଥାପି ହଜାର ହଜାର ବର୍ଷର ଆଦିମ ଅଭ୍ୟାସ ବିରୁଦ୍ଧରେ ଯଦି କେହି କେବେ ହେଲେ ସାହସ କରି କହିଦେଲା, ତାକୁ ନାସ୍ତିକ କହି ଚାରିଆଡ଼ୁ ସହସ୍ର ସଂଖ୍ୟାରେ ଲୋକେ ଘେରି ଯିବେ ।

ଆଗ ଅବଶ୍ୟ ତାକୁ ଟେକା ମାରି ପୋତି ପକାଉଥିଲେ ବା ଜିଅନ୍ତା ପୋଡ଼ି ଦେଉଥିଲେ । ଏବେ କିନ୍ତୁ ସେପରି ଅମାନୁଷିକ ଭାବରେ ତାକୁ ସଂହାର କରିବାର ସାହସ କାହାରି ନାହିଁ; କାରଣ ପ୍ରତ୍ୟକ୍ଷ ଭାବରେ ତାର ସପକ୍ଷରେ ନ ହେଲେ ମଧ୍ୟ ଏ ଯୁଗର ଶ୍ରେଷ୍ଠ ବୁଦ୍ଧିଜୀବୀ ଏବଂ ବିଜ୍ଞାନବେତ୍ତାଗଣ ତା ପାଖାପାଖି ଠିଆ ରହିଛନ୍ତି; ଏଣୁ ନାସ୍ତିକତାର ବ୍ୟାଖ୍ୟାନ ଦେଲାବେଳେ ଆପଣ କାନରେ ଶୋଲ ଗୁଞ୍ଜା ମାରିପାରନ୍ତି; କିନ୍ତୁ ତାକୁ ତାର ଭାବ ପ୍ରକାଶରୁ ଆପଣ ନିବୃତ୍ତ କରିପାରିବେ ନାହିଁ ।

ଆପଣଙ୍କ ଈଶ୍ୱରଗୁଡ଼ିକ ସମସ୍ତେ ଆଞ୍ଚଳିକ । ବହୁ ସହସ୍ର ବର୍ଷ ପରେ ମଧ୍ୟ ସମଗ୍ର ମାନବ ଜାତି ପାଇଁ ଗୋଟିଏ ଈଶ୍ୱର ସମ୍ଭବ ହୋଇପାରି ନାହିଁ, ହେବ ନାହିଁ ମଧ୍ୟ, କାରଣ ନେପାଳର ରଜା ଇଥିଓପିଆର ସମ୍ରାଟଠାରୁ ତାଙ୍କ ଖାଇବା ପିନ୍ଧିବା ବେଶଭୂଷା ଚାଲିଚଳଣି ସାତମୋଡ଼ରେ ଭିନ୍ନ । ଆପଣଙ୍କର ଗୋଟିଏ ଈଶ୍ୱର ସୁନା ସିଂହାସନରେ ବସି ଝୋଳାନ୍ତି । ଆଉ ଗୋଟିଏ ଫେଣା ମାରିଥିବା ସାପ ଉପରେ ଶୋଇଥାନ୍ତି । କିଏ ପାହାଡ଼ ଉପରେ ବିଦ୍ୟୁତ୍‌ର ଠେଙ୍ଗା ଧରି ବସିଥାନ୍ତି ତ ଆଉ କିଏ ଅନ୍ଧାର ଭିତରେ ପୃଥିବୀକୁ ଦାନ୍ତ ଅଗରେ ଟେକି ଧରିଥାନ୍ତି । ଏସବୁ ଆପଣମାନଙ୍କର ନିଜ ନିଜର ଭୌଗୋଳିକ ପରିସ୍ଥିତିଗତ ଅଭ୍ୟାସ । କିଏ ଶୀତର ପ୍ରକୋପରୁ ତା ଈଶ୍ୱରଙ୍କୁ ବଞ୍ଚାଇବାକୁ ବହୁ ପ୍ରକାର କମ୍ବଳ ପୋଷାକ ଗୁଡ଼ାଇ ସୁନା ସିଂହାସନରେ ଆକାଶ ଉପରେ ବସାଏ, କିଏ ବା

Digitized by srujanika@gmail.com

ପ୍ରବଳ ଗ୍ରୀଷ୍ମତାପରୁ ବଞ୍ଚେଇବା ପାଇଁ ସମୁଦ୍ର ଉପରେ ଥଣ୍ଡା ସାପ ଉପରେ ଶୁଆଏ । ଦସ୍ୟୁମାନେ ଏଗୁଡ଼ାକ ଆମକୁ ଗିଳିବାକୁ ଆଉ କୁହନ୍ତୁ ନାହିଁ । ଆମେ ତେର୍ ଧନ ଧରି ଢେର୍ ଗିଳି ଆସିଛୁ; ଆଉ ନୁହେଁ ! କାହା ମେଣ୍ଢା ବନ୍ଧୁଆ ଜାଣିବାକୁ ଯେମିତି ସାହି ସାହି ଭିତରେ ଲଢ଼େଇ ହୁଏ ଏବଂ ନିଃସଙ୍କୋଚ ମେଣ୍ଢାଗୁଡ଼ିକ ଆଡ଼ ପଡ଼େଇ ମୁଣ୍ଡକୁ ମୁଣ୍ଡ ପିଟାପିଟି ହୁଅନ୍ତି, ସେହିପରି ବଳେଇ ଦେବତା, ଗୋରୁ ଦେବତା, ଗିର୍ଜା ଦେବତା, ମସଜିଦ୍ ଦେବତା, ମନ୍ଦିର ଦେବତା, ବିହାର ଦେବତା, ପରସ୍ପର ଲଢ଼ିଲଢ଼ି ମାନବ ଜାତିର ସମଗ୍ର ଇତିହାସଟାକୁ ରକ୍ତ-ରଞ୍ଜିତ କରି ସାରିଛନ୍ତି । ପିଲାଏ ଗୁଡ଼ ଲଢ଼େଇ କଲାଭଳି ଏଥିରେ ସାବାଳକ ବସ୍ତୁରବୁଦ୍ଧିର ଘୋର ଅଭାବ—ଏଥିରେ ଜେହାଦ୍ ବା କ୍ରୁସେଡ୍‌କୁ ଡାକଦେଲେ ଏଣିକି ଆମକୁ ହସମାଡ଼ୁଛି ।

ଆପଣଙ୍କ ଈଶ୍ୱରମାନେ ଯେ ଯାହାର ଜମିଦାରୀ ମାଡ଼ି ବସିଛନ୍ତି । ଆଗ କାଳରେ ପର୍ଯ୍ୟଟକ ଯେପରି ବିଭିନ୍ନ ଦେଶର ରାଜା ବାଦଶାହ ସମ୍ରାଟଙ୍କୁ ଏକ ପର୍ଯ୍ୟାୟର ଭାବି ସମ୍ମାନ ଦେଉଥିଲେ; କିନ୍ତୁ ଆନୁଗତ୍ୟ କେବଳ ନିଜ ରାଜ୍ୟର ଅଧିପତିଙ୍କ ପାଖରେ ସ୍ୱୀକାର କରୁଥିଲେ, ସେହିପରି ଆପଣଙ୍କ ଭିତରୁ କେତେଜଣ ଏ ସମସ୍ତ ଈଶ୍ୱରଙ୍କୁ ସମ୍ମାନ ଦେଇ ଚାଲିଛନ୍ତି । ଉଦ୍ଦେଶ୍ୟ କେବଳ ସଂଘର୍ଷରୁ ନିଷ୍କୃତି ପାଇ ନିଜର ନିରପେକ୍ଷତା ବଜାୟ ରଖିବା ଏବଂ ନିଭୃତରେ ନିଜର ଈଶ୍ୱରଟିକୁ ସର୍ବାପେକ୍ଷା ନିକଟତମ ଏବଂ ଶ୍ରେଷ୍ଠ ରୂପେ ପୂଜା କରିବା ।

ମୂଳ କଥା ହେଲା ଯେ, କେତେକ ସରଳବିଶ୍ୱାସୀ ମନୁଷ୍ୟଙ୍କୁ ଈଶ୍ୱରାଭିମୁଖୀ କରିଦେଇ ପାରିଲେ, ସେମାନଙ୍କୁ ଆଉ ଗୋଟାଏ ମୂଲ୍ୟବୋଧ ଧରାଇ ଦେଇ ପାରିଲେ, ସେମାନେ ଆଉ ସୁଖ-ସ୍ୱାଚ୍ଛନ୍ଦ୍ୟ ବା ବିଳାସ-ବୈଭବ ପାଇଁ କଳି କରିବେନାହିଁ । ଫଳରେ କେତେଜଣ ଦଳପତି ଏବଂ ବଶିଷ୍ଟ ଧର୍ମପାଳଙ୍କ ପାଇଁ ନିଷ୍କଣ୍ଟକ ବ୍ୟସନ ସହଜଲଭ୍ୟ ହୋଇପାରିବ । ଏ ପ୍ରକାର ସମ୍ପୂର୍ଣ୍ଣ କଳ୍ପିତ ମୂଲ୍ୟବୋଧର ମାନଦଣ୍ଡରେ ଶାରୀରିକ ସୁଖ ସୁଖ ନୁହେଁ, ଭୋଗବିଳାସ ପରିହର୍ତ୍ତବ୍ୟ । ଏ କ୍ଷଣଭଙ୍ଗୁର ସଂସାରରେ ବରଂ ନ ଖାଇ ନ ପିଇ ଶରୀରକୁ କୃଶ କରି ତପସ୍ୟା ନାମରେ ତଥାକଥିତ ପୁଣ୍ୟ ଏବଂ ଅନିର୍ଦ୍ଦିଷ୍ଟ ଗୁଣ ଲାଭକଲେ ଅଖଣ୍ଡ ସ୍ୱର୍ଗସୁଖ ଲାଭ ହୁଏ । ଏ ନିରୀହ ପ୍ରଜାଙ୍କର ସ୍ୱର୍ଗଲାଭ ଇଚ୍ଛା ଅତି ଦୃଢ଼ୀର କରିବାକୁ ଦଳ ଦଳ ହୋଇ ଧର୍ମଯାଜକ ଏବଂ ପୁରୋହିତ ନିଯୁକ୍ତ ହୋଇଛନ୍ତି । ସେହିପରି ତାଙ୍କ ଅର୍ଜିତ ଧନ ଏବଂ ଶସ୍ୟ ଲୁଣ୍ଠନ କରି ରାଜାର ଭଣ୍ଡାର ପୂର୍ଣ୍ଣ

Digitized by srujanika@gmail.com

କରିବାକୁ ହଜାର ହଜାର ଅସ୍ତ୍ରଶସ୍ତ୍ରଧାରୀ ସୈନ୍ୟ ମଧ୍ୟ ଅଛନ୍ତି । ଏ ଉଭୟ ଗୋଷ୍ଠୀ ପ୍ରଜାଙ୍କଠାରୁ ଲୁଣ୍ଠିତ ସେହି ଧନରେ ପ୍ରତିପାଳିତ । ଜଣେ ଶାସ୍ତ୍ରଦ୍ୱାରା ମନୀଷମାନଙ୍କୁ କାବୁ କରେ, ଚୌରାଶି ନର୍କର କଳ୍ପିତ ଭୟ ଦେଖାଇ ତାଙ୍କୁ ଆଙ୍ଗୁଠି ଅଗରେ ନଚାଏ ଏବଂ ଆଉ ଜଣେ ଶସ୍ତ୍ର ତୋଳି ତାଙ୍କୁ ଖତବସ୍ତ କରେ । ଏହିପରି ଶାସ୍ତ୍ର ଓ ଶସ୍ତ୍ରର ପ୍ରଭାବରେ ଶାସକଗୋଷ୍ଠୀ ନିରଙ୍କୁଶ ଭୋଗକରି ଆସିଛନ୍ତି—ସେନାଧ୍ୟକ୍ଷ ମନୀଷ ହାତରୁ ଶସ୍ତ୍ର ଛଡ଼ାଇ ତାଙ୍କୁ କ୍ଳୀବ କରିଦେଇଛନ୍ତି, ଏବଂ ଧର୍ମଯାଜକ ସ୍ୱାଧୀନ ଚିନ୍ତା ଅପହରଣ କରି ବିଶ୍ୱାସର ପଥର ଚକି ତଳେ ତାଙ୍କୁ ନିଷ୍ପେଷିତ କରିଦେଇଛନ୍ତି ।

ଆପଣଙ୍କ ମନ୍ଦିରର ଗର୍ଭଗୃହ ଭିତରେ ସର୍ବସାଧାରଣଙ୍କ ଦୃଷ୍ଟି ଆଡ଼ୁଆଳରେ ଆପଣଙ୍କର କାଠ, ପଥର, ମାଟି, ପିତଳ ବିଗ୍ରହକୁ ଯେଉଁମାନେ ସିନ୍ଦୂର ବୋଳି କଳା ଧଳା ଲଗେଇ ଚିତ୍ର କରନ୍ତି, ସେମାନେ କଣ ଜାଣନ୍ତିନାହିଁ ଯେ ଚିତ୍ର ପଛରେ ହୁଏତ ମାତ୍ର ଖଣ୍ଡେ ବଙ୍କା ପଥର ବା ଖଣ୍ଡିଏ ଖଣ୍ଡେ କାଠ ବିଦ୍ୟମାନ ? କିନ୍ତୁ ଯେତେବେଳେ କବାଟ ଫିଟିଯାଏ, ସହସ୍ର ସହସ୍ର ଭକ୍ତ ତାଙ୍କୁ ସର୍ବଶକ୍ତିମାନ୍ ଈଶ୍ୱର ବୋଲି ପ୍ରଣିପାତ ହୋଇ ଭାବବିଭୋର ହୋଇପଡ଼ନ୍ତି—ଏହା କେବଳ ଆତ୍ମପ୍ରତାରଣା ଏବଂ ନିଜକୁ ନିଜେ ସମ୍ମୋହିତ କରିବାର ପ୍ରକ୍ରିୟା । ଖଣ୍ଡେ ଇଟାକୁ କେନ୍ଦ୍ର କରି ଭୋଳହେବାକୁ ଇଚ୍ଛାକଲେ ସେଥିରେ ମଧ୍ୟ ସ୍ୱେଦ ପୁଲକାଦି ମହା ବିକାର ଶରୀରରେ ଦେଖାଦେବ । ଏହାର ଚୂଡ଼ାନ୍ତ ଫଳ ହେଲା ଯେ ବଡ଼ ଭାଗ ଲୋକ ବଞ୍ଚିବାର ସ୍ୱାଧିକାର ବିଷୟରେ ଆଦୌ ସଚେତନ ହେବେନାହିଁ । ପରସ୍ପର କଳହ ନ କଲେ, କେତେଜଣଙ୍କ ନିର୍ଦ୍ଦେଶରେ ବାକି ସମସ୍ତେ ଚଳାଇ ପାରିଲେ ଏକାଠି ରହିବା ସହଜ ହୋଇଯିବ । ଶିଶୁକୁ ପାଳନକରିବା ପରି ଅପାରଗ ବୃଦ୍ଧ ପିତାମାତାଙ୍କୁ ମଧ୍ୟ ପାଳନକରିବାକୁ ନିୟମ ଅଛି । ପରଦ୍ରବ୍ୟକୁ ଲୋଷ୍ଟ୍ରବତ୍ ଜ୍ଞାନ କରି ପଡ଼ୋଶୀକୁ ଭ୍ରାତୃବତ୍ ସ୍ନେହ କରିବାକୁ ଏମାନେ ଶିଖନ୍ତି । ଏଗୁଡ଼ିକ ସହାବସ୍ଥାନ ପାଇଁ ଅନିବାର୍ଯ୍ୟ ସାମାଜିକ ପ୍ରୟୋଜନ । ତାହା କିନ୍ତୁ ଧର୍ମ ମାଧ୍ୟମରେ ଆସେ । ତାହା ସଙ୍ଗେ ସଙ୍ଗେ ଆହୁରି ଅନେକ କଥା ମଧ୍ୟ ଆସେ । ଟିକିଏ ଗଭୀର ଦୃଷ୍ଟି ଦେଲେ ଏ ସମସ୍ତ ନିୟମ ସାର୍ବଜନୀନ ନୁହେ । ଯଥା— ପରସ୍ୱ ଅପହରଣ କଲେ ନର୍କଗତି ଅନିବାର୍ଯ୍ୟ—କିନ୍ତୁ ରାଜକୋଷର କେବଳ ପରସ୍ୱ ହିଁ ଗ୍ରହଣୀୟ—ସେଥିପାଇଁ ଧର୍ମ-ଶାସ୍ତ୍ର ମୂଖର । ଲୁଣ୍ଠିତ ଧନକୁ ଧର୍ମ-କ୍ଷେତ୍ରରେ ଦେବତାଙ୍କୁ ଦାନ କରିଦେଲେ ସ୍ୱର୍ଗକୁ ନିଶୁଣି ମିଳିଯାଏ । କେତେଗୁଡ଼ିଏ

Digitized by srujanika@gmail.com

ମନୀଷଙ୍କୁ ମଧ୍ୟ ଏ ଅବକାଶରେ ଦେବପୂଜା ମିଳେ । ସେମାନଙ୍କୁ ପାଟ ଘୋଡ଼ାଇ ଭିନ ମହଲରେ ବସେଇ ଧୂପ ଦୀପ ଦେଇ କୁହାଯାଏ ଯେ···"ସେ ହିଁ ପରମ ଈଶ୍ୱର ବା ପରମ ଈଶ୍ୱରୀ ।" ତାଙ୍କୁ ଦର୍ଶନ କରିବାକୁ ଟଙ୍କା, ତାଙ୍କର ଆଶୀର୍ବାଦ ପାଇବାକୁ ଆହୁରି ଟଙ୍କା—ତାଙ୍କର ଅନର୍ଗଳ କୃପା ପାଇବାକୁ ମାତ୍ର ଏକ ଲକ୍ଷ୍ୟ । ଶସ୍ତ୍ରଧାରୀ, ଶାସ୍ତ୍ରଧାରୀ ଓ ଶାସକଙ୍କର ଏ ଆପୋଷ ନେଣ୍ଟ ଗୁଡ଼ିଏ ଅକର୍ମା ଶୋଷକଙ୍କୁ ଜୋକ ଶୋଷିଲା ପରି ଶୋଷି ଚାଲିଛି । (ଶାସନର ଗଣତାନ୍ତ୍ରିକ ଆବରଣ ସତ୍ତ୍ୱେ ଆମମାନଙ୍କର ଲୋକ-ସରକାରର ମନ୍ତ୍ରିଗଣ ଗୋଟିଏ ଗୋଟିଏ ଆଶ୍ରମ ଓ ଗୁରୁଙ୍କର ଆଶ୍ରୟ ନିଅନ୍ତି । ନେଲେ ଶତା ଚୈତନ ପାଇଁ ସୁବିଧା ହୁଏ । ଲାଞ୍ଚ ମିଛ ପାଇଁ ସୁବିଧା ହୁଏ । ମନ ବୋଧେଇବାକୁ ମା'ଙ୍କୁ ବା ଗୁରୁଦେବଙ୍କୁ ଅର୍ଥ ଦେଇ ପ୍ରାୟଶ୍ଚିତ୍ତ କରିଦେବା ମଧ୍ୟ ପୂର୍ଣ୍ଣ ସ୍ୱାୟତ୍ତରେ ଥାଏ ।) ଏଥିରେ ଗୁଡ଼ିଏ ଶଠ ମଠ-ମହନ୍ତ ନାମରେ ଯାହା ଉପଦେଶ ଦିଅନ୍ତି, ତାର ବିପରୀତ ବ୍ୟସନରେ ବୁଡ଼ିରହିବାକୁ ସୁବିଧା ପାଆନ୍ତି । ଚାନ୍ଦା ଉଠାଇ ସାଧାରଣ ଅର୍ଥକୁ ଯଥେଚ୍ଛା ବ୍ୟୟ କରିବାର ଅଧିକାର ପାଇଯାନ୍ତି ।

ଆପଣମାନଙ୍କୁ ସବୁଠାରୁ ଅଧିକ ଦୟା ହୁଏ, ଯେତେବେଳେ ଆପଣ ସେହି ଈଶ୍ୱରବାଦୀ ପିଲୁଲା ବା ଶୂନ୍ୟ କାନ୍ଥଟିକୁ ଏ ଅନନ୍ତ ବିଶ୍ୱର ସ୍ରଷ୍ଟା ବୋଲି ଜାହିର କରିବାକୁ ସାହସ କରନ୍ତି । ଆପଣଙ୍କୁ ଆମର ନିମନ୍ତ୍ରଣ ରହିଲା, କେବେ ଦିନେ ପୁଣ୍ୟ ଅର୍ଜନ କରିବାର ଲୋଭ ସମ୍ବରଣ କରି ଆମ ମାନ-ମନ୍ଦିରକୁ ଆସନ୍ତୁ । ସେଇଠି ଥରେ ଏ ମହାକାଶର ସାମାନ୍ୟ ଅଂଶ ଦେଖିପାରିଲେ କିଛି ଅଙ୍କ କଷି ଆପଣଙ୍କୁ ଏ ବିଶ୍ୱ ସଂକ୍ରାନ୍ତରେ ଟିକେ ସଚେତନ କରାଇଦେଲା ପରେ ଆପଣ ସୃଷ୍ଟି ଓ ସ୍ରଷ୍ଟା ବିଷୟରେ ହୁଏତ ସଂଯତ ହୋଇ କଥାବାର୍ତ୍ତା କରି ଶିଖିବେ । କୋଟି କୋଟି ଆଲୋକବର୍ଷରେ ପ୍ରସାରିତ ନୀହାରିକାମଣ୍ଡଳ ଏବଂ ଖଣ୍ଡ ବିଶ୍ୱରେ ଇତସ୍ତତଃ ଚାଳିତ ଏ ଅକଳନୀୟ ମହାକାଶ ! ଏ ପୃଥିବୀର ଜନ୍ମ ପୂର୍ବରୁ ସେ ଅନନ୍ତ ଦିଗ୍‌ବଳୟର ପ୍ରାନ୍ତରୁ ଆଲୋକ ଏ ଦିଗରେ ଗତିକରି ଏ ପର୍ଯ୍ୟନ୍ତ ପୃଥିବୀକୁ ସ୍ପର୍ଶ କରିପାରି ନାହିଁ । ମାତ୍ର ଦଶ ହଜାର ବର୍ଷ ପୁରୁଣା ଆପଣଙ୍କର ଗିରିଗୁହା ମନ୍ଦିର ଗିର୍ଜାରେ କପରି ଏ ଅନନ୍ତ ବ୍ରହ୍ମାଣ୍ଡର ସ୍ରଷ୍ଟା ବିରାଜମାନ କଲେ, ତାହା ଆମକୁ ବୁଝାଇବାକୁ ଆଉ ଚେଷ୍ଟା ନ କଲେ ଆପଣ ବୁଦ୍ଧିମାନ୍‌ର ପରିଚୟ ଦେବେ । ଏକଦା ଏ ପୃଥିବୀ କେବଳ ଜଡ଼ ଥିଲା । ଏହା ଯେପରି ସତ୍ୟ, ଭବିଷ୍ୟତରେ ସଂପୂର୍ଣ୍ଣ ଜୀବଶୂନ୍ୟ ହୋଇଯିବା ମଧ୍ୟ ସେହିପରି

Digitized by srujanika@gmail.com

ନଗ୍ନ ସତ୍ୟ । ଗୋଟିଏ ଶୀତଳ ସୂର୍ଯ୍ୟର ଘୂରିପଟେ ଏକ ନର୍ଜୀବ ପୃଥିବୀ ଦୂରରୁ ଦୂରକୁ ଧୀରେଧୀରେ ଅପସରିଯିବ ଏବଂ ହୁଏତ ଏକଦା ଏକ ନକ୍ଷତ୍ରଲୋକ ରାଜ୍ୟରେ ସବୁ ନିର୍ବାପିତ ହୋଇଯିବ । ସେତେବେଳେ ଆପଣଙ୍କର ଏ ସମସ୍ତ ଅନ୍ତର୍ଜ୍ଞାପ ନିଶ୍ଚୟ ନ ଥିବ । —ନା ତଥାପି ଥିବ ? ଧନ୍ୟ ଆପଣଙ୍କର ଦୁର୍ବୋଧ୍ୟ ବିଶ୍ୱାସ ବ୍ୟାଧି ଏବଂ ଧନ୍ୟ ଆପଣଙ୍କର ଅପ୍ରସାରିତ ଅଜ୍ଞତା ।

ମାତ୍ର ଶହେ ଦୁଇଶହ ବର୍ଷ ତଳେ ଆମେ ଏପରି ଭାଷାରେ ଆପଣଙ୍କୁ କହିଥିଲେ, ଆପଣ ତତ୍‌କ୍ଷଣାତ୍ ଧର୍ମଦ୍ରୋହୀର ପ୍ରାଣଦଣ୍ଡ ପାଇଁ ସୁପାରିସ୍ କରିଥାନ୍ତେ । ଏପରି ଅନେକ ମଧ୍ୟ ଆମ ଭିତରୁ ମରିଛନ୍ତି । ଏବେ ଆପଣଙ୍କର ସହନଶୀଳତା ପାଇଁ ଧନ୍ୟବାଦ । ଆନନ୍ଦର କଥା ଆପଣଙ୍କର ଭଗବାନଙ୍କୁ ଆମେ କୋକ କହିଲେ ଆପଣ ଶୁଣିପାରୁଛନ୍ତି, ଆପଣଙ୍କର ପୂଜକଗୋଷ୍ଠୀକୁ ଶଠ କହିଲେ ଆପଣ ଆମ ଶିରଚ୍ଛେଦ କରୁନାହାନ୍ତି; ଆପଣଙ୍କୁ ଅହମିକଖିଆ ଆତ୍ମପ୍ରତାରକ କହିଲେ ଟିକିଏ ରକ୍ତ ହୋଇ ପାରୁଛନ୍ତି ।

ପ୍ରଥମେ ଭୟରେ ଗଛଟାକୁ, ଖୁଣ୍ଟଟାକୁ ଧରି ତା ତଳେ ଆଶ୍ରା ଲୋଡ଼ୁ ଲୋଡ଼ୁ ଗୋଟାଏ ସମୟରେ ହଠାତ୍ ଆପଣ ଏ ଭଗବାନଟିକୁ ସୃଷ୍ଟି କଲେ । ସେଇଟା ଏତେ ଚମତ୍କାର କାମରେ ଲଗିବ ବୋଲି ଆପଣଙ୍କର ମଧ୍ୟ ଧାରଣା ନଥିଲା । ମନୁଷ୍ୟ ମନରେ ଏକ ଆଦିମ ଭୟ ତ ସବୁବେଳେ ରହିଛି । ଶାରୀରିକ ଯାତନା, ରୋଗ, ଶୋକ, ଜରା, ଶତ୍ରୁ, କ୍ଷୁଧା, ତୃଷା, ଦାରିଦ୍ର୍ୟ, ଅପଯଶ ଏ ସମସ୍ତଙ୍କୁ ସେ ଭୟକରି ଆସିଛି ଏବଂ ସେଇଥିପାଇଁ ସେ ଆଶ୍ରା ଖୋଜୁଛି । ତାକୁ ଆପଣ ଗୋଟାଏ ଶରଣ୍ୟପ୍ରତିମା ଧରେଇ କଚ୍ଛି ମନ୍ତ୍ର ଶୁଣାଇଛନ୍ତି । ଫଳରେ ସେ ମୁଣ୍ଡ ହକ ସେଇଠି ସମର୍ପିତ ହୋଇଯାଇଛି । ତେଣିକି ଆପଣଙ୍କ ସୁବିଧାଟା ଆପଣଙ୍କୁ ନ କହିଲେ ଭଲ । ଆପଣଙ୍କ ପରି ଈଶ୍ୱର ମଧ୍ୟ ବେଶ୍ ଲାଞ୍ଚୁଆ । ତାଙ୍କର ମଧ୍ୟ ଘୋର ନିଜ-ପର ଜ୍ଞାନ ଥାଏ । ସେ ବି ସାଧାରଣ ମନୁଷ୍ୟପରି ଖାଇପିଇ ଶୁଅନ୍ତି । ହର୍ଷବିଷାଦ ପ୍ରକାଶ କରନ୍ତି । ତାଙ୍କର କ୍ରୋଧ କିନ୍ତୁ ସବୁଠୁଁ ମାରାତ୍ମକ । ତା'ର ନାଁରେ ଭୟାର୍ତ୍ତ ଭକ୍ତଙ୍କ ତାଲିକା ଦୈନିକ ବଢ଼ି ଚାଲେ । ଆପଣ କାହିଁକି ଏମିତି ଅବାଧ ଦିଗ୍‌ବିଜୟ କରି ଚାଲିଛନ୍ତି ଆପଣ ଜାଣନ୍ତି ? ତା'ର କାରଣ ହେଲା ଯେ, ଶତ ଚେଷ୍ଟାକରି ମଣିଷ ତାର ମନର ଗହ୍ୱର ଭିତରୁ ମୃତ୍ୟୁଭୟକୁ ଅପସାରିତ କରି ପାରୁନାହିଁ । ବାକି ଯେତେ ସମସ୍ତ ଭୟ ତାହା ସେ ମୂଳ ଗଣ୍ଡିର ଶାଖାପ୍ରଶାଖା ମାତ୍ର । ମୃତ୍ୟୁ ସମସ୍ତଙ୍କୁ ଗ୍ରାସ କରେ, ତା ପାଖରେ ସମସ୍ତେ ହାରିଯାନ୍ତି । ଆପଣ

Digitized by srujanika@gmail.com

ସିନା ଗାଲୁମାରନ୍ତୁ ଯେ ଆପଣ ମୃତ୍ୟୁକୁ ଜୟ କରିଯିବେ । ଆପଣ ନ ହେଲେ ମଧ୍ୟ ଆପଣଙ୍କର ଯେଯ ଅର୍ହନ୍, ବୁଦ୍ଧ ବା ଅତିମାନସିକ ଗୁରୁ ଏ ଘୋର ମୃତ୍ୟୁକୁ ପାରି ହୋଇ ଯାଇଛନ୍ତି; କିନ୍ତୁ ଏମିତି ଗୁଡ଼ାଏ ତାହା ମିଛ କହିବାକୁ କାହିଁକି ଓ କପଟ ଲଜ୍ଜା ଲାଗେନାହିଁ ତାହା ଆମେ ଭାରି ଗମ୍ଭୀର ଭାବରେ ଅନୁଧ୍ୟାନ କରୁଛୁ । ଆମକୁ ଲାଗେ ଯେ ଏଇଟା ଗୋଟାଏ ମନସ୍ତାତ୍ତ୍ୱିକ ବିଡ଼ମ୍ବନା । ଅନେକ ଦିନରୁ ଏହା କହି କହି ଅଭ୍ୟାସ ହୋଇଯାଇଥିବାରୁ ତା ମିଥ୍ୟା ବୋଲି ଭିତରେ ଭିତରେ ବୁଝିଲେ ମଧ୍ୟ ଆପଣଙ୍କର ଦୁର୍ବଳ ଜିଭଟି ଲେଉଟି ପାରେ-ନାହିଁ । ଆପଣ ଆଉ କଣ କରି ପାରିବେ ? ସେଥିପାଇଁ ଆପଣଙ୍କୁ ଆମେ ଆମର ହାର୍ଦ୍ଦିକ ସହାନୁଭୂତି ଜଣାଉଛୁ ।

ସବୁଠୁ ବେଶି ଆମୋଦ ଲାଗେ, ଯେତେବେଳେ ଆପଣଙ୍କ ଠାକୁରଙ୍କୁ ଶକ୍ତିଶାଳୀ ବୋଲି ପ୍ରମାଣିତ କରିବାକୁ ଆପଣ ତା ଉପରେ ସୁନା, ରୂପା, ହୀରା, ଜହରତ୍ ମଣ୍ଡି ଦେଇ ଯାଆନ୍ତି । ସେ ସବୁ ପୁଣି ବିଭିନ୍ନ ଖଣ୍ଡଙ୍କର ଦାନ । ଯେଉଁ ଠାକୁରର ସ୍ୱର୍ଣ୍ଣଭାର ଯେତେ ବେଶି, ସେ କୁଆଡ଼େ ସେତେ ପ୍ରତାପୀ । ଯେଉଁ ଗୁରୁ ଯେତେ ଉପରୁ କହେ, ସେ ସେତେ ବଡ଼ । ତାକୁ ସେବା କରିବାକୁ ହେଲେ ପୁଣି ଧନଲିପ୍ସା ସଂପୂର୍ଣ୍ଣ ତ୍ୟାଗ କରିବାକୁ ହେବ । ବାଃ—ବାଃ—କି ଚମତ୍କାର ! ସାମନ୍ତବାଦୀ ବାଦଶାହୀ ନୀତି । କେମନ୍ତ ଲାଞ୍ଚୁଆ, ପରସ୍ୱାପହାରୀ, ଜିଜିଆକର ଆଦାୟ କରୁଥିବା ସର୍ବଶକ୍ତିମାନ୍ ଆପଣଙ୍କର ଏ ଠାକୁର । କେବଳ ତା ମୁହେଁ । ଯା ଦେଉଳ ବଡ଼, ସେ ଦିଅଁ ବଡ଼ । ମଣିଷକୁ ଆକାର ଓ ଐଶ୍ୱର୍ଯ୍ୟରେ ଆତଙ୍କିତ କରିବାର କି ଆଦିମ ଉପାୟ ସବୁ ଆପଣ ଏବେ ମଧ୍ୟ ଅଭ୍ୟାସ କରୁଛନ୍ତି । ଏଥିରେ ଆମକୁ ହସ ମାଡ଼ିଲେ ଆପଣ ଚିଡ଼ନ୍ତି । କହନ୍ତି—"ବିଧର୍ମୀ, ପାଷଣ୍ଡ, ଅବିଶ୍ୱାସୀ, ନାସ୍ତିକ । ତୁମର ନର୍କଗତି ହେବ, ତୁମେ ସବୁ ଅତଳ ଅନ୍ଧାରରେ ପଡ଼ିବ !" ଆମକୁ ଆହୁରି ହସମାଡ଼େ । ଆପଣ ଟିକିଏ ସେ ପ୍ରତାରଣାର ଧୂଆଁ ଭିତରୁ ମୁକୁଳି ଆସିଲେ, ବୁଝନ୍ତେ ସମସ୍ତ ଜିନିଷଟା କେଡ଼େ ହାସ୍ୟାସ୍ପଦ ।

ସତ୍ୟ କୁଆଡ଼େ ଆପଣ ହିଁ ଜାଣିଛନ୍ତି । ଆଉ କେହି ଜାଣିବାର ଅଧିକାରୀ ନୁହନ୍ତି । ଆପଣମାନେ ବହୁ ରାଜା ମହାରାଜାଙ୍କର ଅନ୍ନ ଧ୍ୱଂସକରି ଲକ୍ଷ୍ମଣରେ ସାହାଯ୍ୟ କରି ଖୁବ୍ ବୁଦ୍ଧି ଖର୍ଚ୍ଚ କରି ଶାସ୍ତ୍ର ପ୍ରଣୟନ କରିଛନ୍ତି । ଆପଣଙ୍କର ତର୍କ ବଳ ଢେର୍; କିନ୍ତୁ ଆପଣଙ୍କର ଶେଷ କଥା ହେଲା, ତର୍କ କରନାହିଁ । ଖାଲି ଯାହା କୁହାହେଲା ତାହା କରିଯାଅ । ଆପଣ ସବୁବେଳେ ମୃତ୍ୟୁ ପର କଥା,

Digitized by srujanika@gmail.com

ଇନ୍ଦ୍ରିୟାତୀତ କଥା ଭାବୁଥାନ୍ତି, ଯେଉଁଠି ଯାହା ଇଚ୍ଛା ତାହାକୁ କହିଲେ ମଧ୍ୟ ତାକୁ ପରୀକ୍ଷା କରିବା ସମ୍ଭବ ନୁହେଁ । ତାହା ଏପରି ଏକ ଗପୁଡ଼ିଙ୍କ ରାଜ୍ୟ ଯେ, ସେଇଠି ବକ୍ତା ମୂର୍ଖ ଏବଂ ଶ୍ରୋତା ଉଲ୍ଲୁ ହେଲେ ମଧ୍ୟ ବେଶ୍ ଚଳେ । ଆପଣ ଯାହା କିଛି ସିଦ୍ଧି, ମୁକ୍ତି ବା ଆନନ୍ଦ କଥା କହୁଛନ୍ତି, ଧରନ୍ତୁ ସେ ସବୁ ସତ୍ୟ । ତା'ପରେ କିନ୍ତୁ କଣ ? ଆପଣ ତ ସେଇ ଜଡ଼ ଧର୍ମରେ ବିଲୁପ୍ତ ହେବାକୁ ବାଧ୍ୟ । ଆପଣଙ୍କର ଯଶ କୀର୍ତ୍ତି ମଧ୍ୟ ବିସ୍ମୃତ ହେବାକୁ ବାଧ୍ୟ । ତେବେ କାହିଁକି ଓ କାହା ଉପରେ ଏ ସମସ୍ତ ଆଡ଼ମ୍ବର ?

ଆପଣ ସେ ସବୁ ପୋଥିପତ୍ର ବନ୍ଦକରନ୍ତୁ । ଆପଣଙ୍କର ପ୍ରତିମା ଆଦି ବିସର୍ଜନ କରନ୍ତୁ । ସେଇଠି ଗଚ୍ଛିତ ଅର୍ଥ ଜନକଲ୍ୟାଣରେ ବ୍ୟୟ କରନ୍ତୁ । ଆସନ୍ତୁ ଆଉ ଥରେ ଜୀବନକୁ ବୁଝିବାକୁ ଚେଷ୍ଟାକରିବା, କୌଣସି ପ୍ରାକ୍‌ବିଶ୍ୱାସରେ ମନକୁ କ୍ଲୀବ ନ କରି ନିରପେକ୍ଷ ଶିଶୁ ପରି ସବୁ ଜିନିଷର ମୂଲ୍ୟାୟନ କରିବା ।—ପୃଥିବୀକୁ ଦେଖିବା ସୌରମଣ୍ଡଳରୁ, ମଣିଷକୁ ଦେଖିବା ମହାଶୂନ୍ୟରୁ । ଆପଣଙ୍କର ଏଥିରେ କିଛି ପ୍ରତିପତ୍ତି ହୁଏତ ହ୍ରାସ ହୋଇପାରେ; କିନ୍ତୁ ଆଉ ଏମିତି ଅଭିନୟ କରି ଭଣ୍ଡାମିରେ ପେଟ ପୋଷିବାକୁ କଣ ଆପଣଙ୍କର ଇଚ୍ଛା ହେଉଅଛି ? ଆପଣଙ୍କର ପୁରୁଣା ମୁଖା ଦେହରେ ପରି ଅଜସ୍ର କଣା ! ଆମେ ସବୁ ଆପଣଙ୍କର ସ୍ୱରୂପ ଦେଖି ନାକରେ ହାତ ଦେଇ ହସୁଛୁ । ଆଉ ଆପଣ କଣ ଏ ଧନ୍ଦା ଚଳାଇ ପାରିବେ; କଥା ମାନନ୍ତୁ ! ଆଉ ଗୁଡ଼ାଏ ଲୋକହସା ନ ହୋଇ ଗୋଟିଏ ସମ୍ମାନକର ବୃତ୍ତି ବାଛି ନଅନ୍ତୁ ଏବଂ ଚିନ୍ତା କରିବାକୁ ଶିଖନ୍ତୁ ନିଜ ଅନାବିଳ ଅକୁଣ୍ଠିତ ବୁଦ୍ଧି ସାହାଯ୍ୟରେ ।

Digitized by srujanika@gmail.com

# ଦାରୁଦର୍ଶନ

ଅବିଶ୍ୱାସରେ ବିଶ୍ୱାସ ନଥିଲେ ଅବିଶ୍ୱାସ କରିହୁଏ ନାହିଁ । ଯେ କିଛି ବିଶ୍ୱାସ କରେନାହିଁ ବୋଲି କହେ, ସେ ଅନ୍ତତଃ ନିଜକୁ ଏବଂ ନିଜର ସଂଶୟାତ୍ମକ ମନକୁ ସ୍ୱୀକାର କରେ ଏବଂ ଏହି ସ୍ୱୀକୃତି ମାଧ୍ୟମରେ ବିଶ୍ୱାସ କରେ । ବିଶ୍ୱାସ ପରି ଅବିଶ୍ୱାସ ମଧ୍ୟ ସଂକଳ୍ପ ବିକଳ୍ପାତ୍ମକ ମନର ଏକ ସହଜାତ ଲକ୍ଷଣ । ଏ ଦୁଇଟି ପରସ୍ପର-ବିରୋଧୀ ଧର୍ମର ସଂଘାତରେ ଦ୍ୱନ୍ଦ୍ୱ ଜାତହୁଏ । ଦ୍ୱନ୍ଦ୍ୱ ଓ ସଂଶୟ ମନର ପ୍ରମଥନକାରୀ ଅନ୍ୟାନ୍ୟ ଶକ୍ତି ସମୂହଙ୍କୁ ଉଦ୍ଦୀପ୍ତ କରନ୍ତି । ଫଳରେ ମନ କେବଳ ବିଷୟାଶୟୀ ହୋଇ ରହିଯାଏ । ଚଞ୍ଚଳ ମନର ଆଉ ନିଗ୍ରହ ହୋଇପାରେ-ନାହିଁ; କିନ୍ତୁ ଯେ ଦ୍ୱନ୍ଦ୍ୱାତୀତ ଏବଂ ସ୍ଥିତପ୍ରଜ୍ଞ, ତା' ପାଇଁ ବିଶ୍ୱାସ ଏବଂ ଅବିଶ୍ୱାସ ସମପର୍ଯ୍ୟାୟ ଭୁକ୍ତ । ସେ କୌଣସିଟିରେ ବିଚଳିତ ହୁଏନାହିଁ । ସ୍ଥିତପ୍ରଜ୍ଞ ହେବା ଅବଶ୍ୟ ସହଜ ସାଧ୍ୟ ନୁହେଁ, ଏଣୁ ନିଜ ନିଜର ବିଶ୍ୱାସ-ଅବିଶ୍ୱାସର ଦ୍ୱନ୍ଦ୍ୱକୁ ଆଶ୍ରୟକରି ମାନବଜାତିର ପ୍ରାରମ୍ଭରୁ ଅଦ୍ୟାବଧି ସାଧାରଣ ମନୁଷ୍ୟ ବଞ୍ଚିଆସିଛି ।

ବାଉଁଶ ସରଳ ନହେଲେ ବଇଁଶୀ ବାଜେ ନାହିଁ । ମନ ସରଳ ନ ହେଲେ ବିଶ୍ୱାସ ଉପୁଜେ ନାହିଁ । ମନର ଏଇ ଋଜୁ ଅବସ୍ଥାରେ ଯେଉଁ ବିଶ୍ୱାସ ସେଥିରେ ଆଧାରିତ ହୋଇଯାଏ, ତାହା ସେଇ ବ୍ୟକ୍ତି ଜୀବନର ଚରମ ସାର୍ଥକତା; ତା'ର ସର୍ବଶ୍ରେଷ୍ଠ ମୂଲ୍ୟବୋଧର ସ୍ତମ୍ଭ । ସାଧାରଣତଃ ଏହା ଧର୍ମବିଶ୍ୱାସର ରାଜ୍ୟ । ଏହା ଉପରେ ଆଉଜି ରହେ ନୈତିକତା, ସାମାଜିକତା, ଶିକ୍ଷା, ସଂସ୍କୃତି, ରାଜନୀତି । ଏଣୁ ଏହା ଉପରେ ହସ୍ତକ୍ଷେପ ହେଲେ ମସ୍ତିଷ୍କ ଉତ୍‌କ୍ଷିପ୍ତ ହୋଇଉଠେ । ଶହ ଶହ କ୍ରୁସେଡ଼ରେ ପ୍ରାଣବଳି ଦେଇ ସେ ତାକୁ ବଞ୍ଚାଏ, ଶିର୍ ଦେଇ ଶାୟର୍ ରକ୍ଷାକରେ । ବିଶ୍ୱାସର ସିଂହାସନ ତା'ର କେତେବେଳେ ଖାଲି ରହେନାହିଁ । ଧର୍ମର ଆଦେଶ ନହେଲେ ମଧ୍ୟ ଅନ୍ୟ ଯେ କୌଣସି ଆଦର୍ଶବାଦ ସେ ଗାଦିମାଡ଼ି ବସିବାକୁ ହେବ । ଖାଲି ଖଟୁଲି ରହିବା ସମ୍ଭବ ନୁହେଁ । ଏସିରିଆ ଏବଂ ବେବିଲୋନର ବିଭିନ୍ନ ଦେବାଶ୍ରିତ ଧର୍ମବିଶ୍ୱାସୀଙ୍କ ସଂଘର୍ଷ ପରି ଏ ଯୁଗରେ

Digitized by srujanika@gmail.com

ଦୁଇଟା ମତ ବା ବିଶ୍ୱାସର ମଧ୍ୟ ସଂଘର୍ଷ ହୋଇପାରେ; ଉଭୟ ସଂଘର୍ଷ ଭିତରେ ମୌଳିକ ପାର୍ଥକ୍ୟ କିଛି ନାହିଁ ।

ତର୍କ ଏବଂ ବିଶ୍ୱାସ ମନପାଇଁ ଦୁଇଟି ସ୍ୱାଧୀନ ଅବଲମ୍ବନ । ଯୁକ୍ତି ଚିନ୍ତାଶୀଳ ମନର ଆଲମ୍ବନ, ଯେପରି ଦୃଷ୍ଟି ପାଇଁ ରଙ୍ଗ ବା ଆକାର, କର୍ଣ୍ଣପାଇଁ ଶବ୍ଦ ଏବଂ ରସନା ପାଇଁ ସ୍ୱାଦ । ମନ ରହସ୍ୟମୟ ହେଲେ ସୁଦ୍ଧା ତାହା ଏକ ବିଶିଷ୍ଟ ଇନ୍ଦ୍ରିୟ ମାତ୍ର । ଚକ୍ଷୁ ଯେପରି ଦେଖେ ଏବଂ ନାସିକା ଗନ୍ଧ ଗ୍ରହଣକରେ, ମନ ସେପରି ଚିନ୍ତାକରେ, ତର୍କ କରେ, ପ୍ରମାଣ ଅପ୍ରମାଣ ନିର୍ଣ୍ଣୟ କରେ । ଏ ସମସ୍ତ ପ୍ରକ୍ରିୟାପାଇଁ ଇନ୍ଦ୍ରିୟାନୁଭବ ଏବଂ କୌଣସି ଏକ ନିର୍ଦ୍ଦିଷ୍ଟ ଭାଷାର ପରିସର ପ୍ରୟୋଜନ । ଭାଷା ଶବ୍ଦସମ୍ବଳିତ । ପ୍ରତ୍ୟେକ ଶବ୍ଦର ଅର୍ଥ ସାଧାରଣ ସ୍ୱୀକୃତି ଉପରେ ଆଧାରିତ; ଏଣୁ କେବଳ ବିଶ୍ୱାସ ସାପେକ୍ଷ । କୌଣସି ଏକ ବିଶ୍ୱାସକୁ ଆକ୍ରମଣ କଲାବେଳେ ଯେଉଁ ଶବ୍ଦ ସମ୍ଭାର ବ୍ୟବହୃତ ହୁଏ, ତା'ର ନିର୍ଦ୍ଦିଷ୍ଟ ଅର୍ଥ ଶ୍ରୋତା ଗ୍ରହଣ କରୁଛି ବୋଲି ବିଶ୍ୱାସ ଥାଏ । ତଥାପି ବିଶ୍ୱାସ ବିରୁଦ୍ଧରେ ଯୁକ୍ତିତର୍କ କରାଯାଏ । ଯୁକ୍ତି କରିବା ଚେତନ ମସ୍ତିଷ୍କର ଏକ ଅନିବାର୍ଯ୍ୟ ସମ୍ପତ୍ତି ।

ଯୁକ୍ତିଦ୍ୱାରା ଯୁକ୍ତିର ସୀମା ନିର୍ଦ୍ଦେଶ କରାଯାଇପାରେ । ମନଦ୍ୱାରା ମନର ଦୁର୍ବଳତା ନିର୍ଣ୍ଣୟ କରାଯାଇପାରେ । ଯୁକ୍ତିର ପରପାରରେ ବିଶ୍ୱାସ, ମନର ପରପାରରେ ଅବାଙ୍ମାନସ ଗୋଚର କିଛି ବିଶ୍ୱାସ ସତ୍ତ୍ୱ । ଯାହା ମନର ଅଜ୍ଞାତ ତାହା ଯୁକ୍ତିର ଅଜ୍ଞାତ; କାରଣ ଯୁକ୍ତି ମନର ପ୍ରକ୍ରିୟା । ଯେପରି କର୍ଣ୍ଣରସାୟନ ସଙ୍ଗୀତ ଗାନକଲେ କାନକୁ ଭଲଲାଗେ, ମୁଖରୋଚକ ରସ ପାନକଲେ ଜିହ୍ୱାକୁ ସୁହାଏ, ସେପରି ଯୁକ୍ତିସିଦ୍ଧ ବିଷୟରେ ମନର ତୃପ୍ତି ସାଧନ ହୁଏ । ଇନ୍ଦ୍ରିୟର ତୃପ୍ତିକୁ ସୁଖ ଜ୍ଞାନ କଲାପରି ମନର ତୋଷଣକୁ ସତ୍ୟ ବୋଲି ଭ୍ରମ ହୋଇଥାଏ । ଜଠରରେ କ୍ଷୁଧା ହେଲେ ଆହାର ଯୋଗେଇ ଦିଆଯାଏ, ମନରେ କ୍ଷୁଧାହେଲେ ଯୁକ୍ତି ବାଢ଼ି ଦିଆଯାଏ । ଆହାରରେ କ୍ଷୁଧା ନିବୃତ୍ତ ହୁଏନାହିଁ, ତଦ୍ୱାରା ତାକୁ ଜାଗ୍ରତ ରଖାଯାଏ ମାତ୍ର, ସମିଧରେ ଅଗ୍ନି ପରି । ଯୁକ୍ତିରେ କୌତୂହଳ ବା ସନ୍ଦେହ ଦୂର ହୁଏନାହିଁ । ନୂତନ ଶିଖା ମେଲି ସେ ପୁଣି ପ୍ରକାଶିତ ହୁଏ । କ୍ଷୁଧାର ଅନ୍ତ ନାହିଁ, ଆହାରର ଅନ୍ତ ନାହିଁ, ସନ୍ଦେହର ଅନ୍ତ ନାହିଁ, ଯୁକ୍ତିର ମଧ୍ୟ ଅନ୍ତ ନାହିଁ । ଏହା କିନ୍ତୁ ଅନନ୍ତର ମୂର୍ତ୍ତି । ଏହା କୁମ୍ଭାର ଚକର କୌଣସି ବ୍ୟାସର ଦୁଇଟି ବିନ୍ଦୁର ପରସ୍ପରର ଅନୁଧାବନ କରନ୍ତି । ଏଠି କାହାକୁ କେବେ ସତ୍ୟ ମିଳେନାହିଁ, କେବଳ ମନରୂପୀ ଇନ୍ଦ୍ରିୟର ତୃପ୍ତି ସାଧନ ହୋଇଛି ମାତ୍ର । ଏଥିରେ

Digitized by srujanika@gmail.com

ଅନ୍ତତଃ ଗୋଟିଏ ଉପକାର ହୁଏ । ସଚେତନ ମନ ତା'ର ସୀମା ବୁଝିଯାଏ । ବିନମ୍ରରେ ସ୍ୱୀକାର କରେ ଯେ, ତା' ପରପାରରେ ଅନେକ ସମ୍ଭାବନା ରହିଯାଉଛି । ଏଣୁ ଏଣ୍ଡୁଅ ଶିଜୁବାଡ଼ ଯାଏ ନଗଲେ ବାଡ଼ ଆରପଟ କଥାର କେମିତି ଆଭାସ ପାଇବ ? ମନ ଯୁକ୍ତିକରୁ ସେଥିରେ ସେ ପାକଳ ଧରିବ । ତାର ନାବାଳକ୍ୱ କଟିଯିବ । ତା'ପରେ ହୁଏତ ପ୍ରଶ୍ନ ଉଠିପାରେ କେନେଷିତଂ ପ୍ରେଷିତଂ ମନଃ···ସେ ହିଗ ଅଲଗା—ଏତକ ମାତ୍ର ଉପୋଦ୍‌ଘାତ ପରେ ବିସ୍ତୃତ ଆରମ୍ଭ ହେଉ ।

ଏ ବର୍ଷ ନୀଳାଚଳ ଧାମରେ ଦାରୁବିଗ୍ରହ ବଦଳ ହେବେ । ନବ କଳେବର ହେବ । ଜ୍ୟୋତିଷ ଗଣନା ଅନୁସାରେ ଏ ବର୍ଷ ଦୁଇଟି ଆଷାଢ଼; ଏଣୁ ନବକଳେବର ପାଇଁ ନବନ୍ଧ ଏକାଧିକ ବିଧାନ ମଧ୍ୟରୁ ପ୍ରଥମ ପାଦ ପୂରଣ ହେଲା । ୧୯୫୦ ମସିହା ପରେ ଠାକୁର ପୁଣି ଏଥର ନବକଳେବର ହେଉଅଛନ୍ତି । ଜୀର୍ଣ୍ଣବାସ ପରିହାର କରି ନବବସ୍ତ୍ର ଗ୍ରହଣ କଲାପରି ପ୍ରାଣୀର ଦେହାନ୍ତର ହୁଏ (ବାସାଂସି—ଜୀର୍ଣ୍ଣାନି···ଗୀତା) ସେହି ନ୍ୟାୟରେ କ'ଣ ଜଗନ୍ନାଥଙ୍କର ବିଗ୍ରହାନ୍ତର ହୁଏ କି ? ଏ ପ୍ରକାର ଜୀବମୂଳକ ବିକାର ସହିତ ପରଂବ୍ରହ୍ମ ସତ୍ତାର କିପରି ଏକତ୍ର ବିସ୍ତାର କରାଯାଇପାରେ ? ତାହା କେବଳ ଗୋଟିଏ ଦୃଷ୍ଟିରୁ ରୂପ ଗୁଣୋତ୍ତୀର୍ଣ୍ଣ ଅବାଙ୍ମନସ୍ ସତ୍ତାକୁ ବିଗ୍ରହୀଭୂତ କରିବା ବିଡ଼ମ୍ବନା ମାତ୍ର । ଅବତାର କ୍ଷେତ୍ରରେ ସିନା ନିର୍ଦ୍ଦିଷ୍ଟ ବିଗ୍ରହ; କିନ୍ତୁ ଅବତାରୀଙ୍କର ବିଗ୍ରହ କିପରି ସମ୍ଭବ ? ଏଣୁ ଜଗନ୍ନାଥଙ୍କର ବିଗ୍ରହ ବିଗ୍ରହ ନୁହେଁ, ଏକ ଇଙ୍ଗିତ ମାତ୍ର । ତାହା ଏକ ସୂଚନା, ଏକ ରୂପକଳ୍ପ । ବିଗ୍ରହରେ ଦେବତ୍ୱ ଆରୋପ କରିବାରେ ସାଧାରଣ ଭ୍ରମ ନିରାକରଣ କରିବାକୁ, ବ୍ରହ୍ମଦାରୁଙ୍କର ନବକଳେବର ହୋଇଥାଏ । ରତ୍ନ ସିଂହାସନରେ ଅଧିରୂଢ଼ ବିଗ୍ରହ, ପରମାତ୍ମା ସ୍ୱରୂପ, ସର୍ବଧର୍ମର ସମାହାର ସତ୍ୟ ସତ୍ତାର ଧ୍ୟାନକଳ୍ପିତ ବିଗ୍ରହ । ଏଥିରେ ସୂଚନା ଦିଆଯାଏ ଯେ, ଯଦି ପରମ ସତ୍ୟରୂପ କିଏ, ତାହା ପ୍ରାପ୍ତବ୍ୟ ଏହାପରି ଯଦି ମାନବୀ ଚେତନା ଏବଂ ରୂପର ସନ୍ନିକଟବର୍ତ୍ତୀ ହୁଏ, ତେବେ ବ୍ରହ୍ମ ପ୍ରାପ୍ତି ଏହିପରି । ତେବେ କାଳେ ଏହାକୁହିଁ ସେହି ବୋଲି ଦର୍ଶକ ଭାବିଦେଇପାରେ, କେବଳ ବିଗ୍ରହ ହିଁ ବ୍ରହ୍ମ ବୋଲି ଭ୍ରମ କରିଦେଇପାରେ, ଯଦ୍ଦ୍ୱାର ପ୍ରଶ୍ନକର ଉଦ୍ଦେଶ୍ୟ ପୂରଣ ହେଉନାହିଁ, ବ୍ରହ୍ମର ସର୍ବ ବ୍ୟାପକତାରେ ଦର୍ଶକର ଜ୍ଞାନ ହେଉନାହିଁ; ଏଣୁ ପ୍ରତ୍ୟକ୍ଷରେ ବିଗ୍ରହକୁ ତ୍ୟାଗ କରିଯାଏ । "ସେ କ'ଣ ଏଇ ?" ପ୍ରଶ୍ନ କଲେ ଉତ୍ତର ମିଳେ 'ନେତି' । ମୃଣ୍ମୟ ପ୍ରତିମାକୁ ଆବାହନ ପ୍ରାଣ ପ୍ରତିଷ୍ଠା କରି ସାମୟିକ ପୂଜାପରେ ବିସର୍ଜନ କରିଯାଏ । ଏହାର ପଶ୍ଚାତ୍ତରେ ମଧ୍ୟ ସେଇ

Digitized by srujanika@gmail.com

ଇଙ୍ଗିତ ବିଦ୍ୟମାନ । ଶରୀର ସତ୍ୟ ନୁହେଁ ଆତ୍ମା ସତ୍ୟ । ବିଗ୍ରହ ବ୍ରହ୍ମ ନୁହେଁ, ତା'ର ଅନ୍ତର୍ଗତ ନୁହେଁ, ସମ ପରିବ୍ୟାପ୍ତ ନୁହେଁ, ସର୍ବବ୍ୟାପୀ । ଆକୁମାରୀ ହିମାଳୟ ପ୍ରତ୍ୟେକ ହିନ୍ଦୁ ଦେବାଳୟରେ ମୂର୍ତ୍ତି ପୂଜିତ ହୁଅନ୍ତି । ମୂର୍ତ୍ତି ପୂଜାର ସପକ୍ଷରେ ଯୁକ୍ତି ବିଳାସର ଏ ଅବକାଶ ନୁହେଁ; କିନ୍ତୁ କୌଣସି କ୍ଷେତ୍ରରେ ସଂପୂଜିତ ବିଗ୍ରହକୁ ଏପରି ପରିହାର କରି, ନବକଳେବର କଳ୍ପନା ପାଇଁ ସାହସ ହୋଇନାହିଁ । ଦେବ ବିଗ୍ରହକୁ ବିଧର୍ମୀ ସ୍ପର୍ଶ କଲାମାତ୍ରେ ଲକ୍ଷ ମସ୍ତକ ଭୂଲୁଣ୍ଠିତ ହେବାର ଭୂୟସୀ ପ୍ରମାଣରେ ଇତିହାସ ମୁଖର । ବିଗ୍ରହଙ୍କୁ ସଂପୂର୍ଣ୍ଣ ପରିହାର କରି ପରମ ସତ୍ୟ ଇଦ୍ରିୟର ସୂଚନା ଦେବା ପାଇଁ ଏପରି ଅପୂର୍ବ ସାହସ ଓ ସତ୍ୟ ସଙ୍କଳ୍ପ ବିରଳ । ପରମ ସତ୍ୟ ଅଗୋଚର; ଏଣୁ ସାକାର ବିଗ୍ରହକୁ ଆଶ୍ରୟକରି ତଦ୍‌ବ୍ୟତିରେକ ସତ୍ୟକୁ ଅନୁଭବ କରିବା ହେଲା ଆଧ୍ୟାତ୍ମିକ ସାଧନା । ଏଥିରେ ପ୍ରତ୍ୟକ୍ଷରୂପେ ସହାୟ ହୁଏ ଠାକୁରଙ୍କ ନବକଳେବର ଗ୍ରହଣ । ଖଣ୍ଡ ପର୍ବତ ପରି ଶ୍ରୀମନ୍ଦିର ଯେ ଗଢ଼ି ପାରିଥିଲା, ତା ପାଇଁ କେବେହେଲେ ଶିଳାର ଅଭାବ ନଥିଲା । ଏଣୁ ସେ ଦେବବିଗ୍ରହଙ୍କୁ ଦାରୁ ରୂପରେ ପ୍ରତିଷ୍ଠା କରିବାର ଉଦ୍ଦେଶ୍ୟ ଗ୍ରହଣୀୟ । ନୀଳ ମାଧବଙ୍କ ଶାବରୀ ପରମ୍ପରାରେ ଦାରୁ ପୂଜନ ମଧ୍ୟ ଏକ ପ୍ରତିପାଦ୍ୟ ଯୁକ୍ତି— ଦାରୁନିର୍ମିତ ମୂର୍ତ୍ତି କିଛିକାଳପରେ କ୍ଷୟିତ ହୋଇଯିବା ହେତୁ ନବକଳେବରର ଯୋଜନା ମଧ୍ୟ ଯୁକ୍ତିଯୁକ୍ତ । ଏତଦ୍ଭାବ ମୂଳ ଉଦ୍ଦେଶ୍ୟହିଁ ପ୍ରତିପାଦିତ ହେଉଛି । ବିଗ୍ରହର ନଶ୍ୱରତା ଭୌତିକତା ସୂଚନା ଦେବାହିଁ ମୌଳିକ ଲକ୍ଷ୍ୟ । ପାଷାଣୀ ମୂର୍ତ୍ତି ମଧ୍ୟ କ୍ଷଣଭଙ୍ଗୁରତା ସୂଚନା ଦେଇପାରେ; କିନ୍ତୁ ସାଧାରଣ ମାନବର ଜୀବନକାଳ ମଧ୍ୟରେ ତାହା ପ୍ରତ୍ୟକ୍ଷ ଅନୁଭବକୁ ଆସି ନପାରେ ।

ନଶ୍ୱରତା ସିନା ଦାରୁ ବିଗ୍ରହରେ ପ୍ରତିପାଦିତ ହେଲା ! କେଉଁ ଦୃଷ୍ଟିରୁ ସେଥିରେ ବ୍ରହ୍ମସନ୍ଧାନ ମିଳେ ? କପରି ସୂଚନା ମିଳେ ଯେ ଏହା ବ୍ରହ୍ମସ୍ୱରୂପ । ଏହାର ଉତ୍ତରରେ ଅନେକ ଆଧ୍ୟାତ୍ମିକ ଅର୍ଥସମ୍ବଳିତ ବ୍ୟାଖ୍ୟା ରହିଛି । ଏଠାରେ ସୁଧୀ ପାଠକଙ୍କୁ ସାମାନ୍ୟ ଇଙ୍ଗିତ ଦେବାହିଁ ଯଥେଷ୍ଟ ମନେହୁଏ । ଚିରଜାଗ୍ରତ ସର୍ବଦ୍ରଷ୍ଟା ସାକ୍ଷୀରୂପର ପ୍ରତୀକ ଦୁଇଟି ପଲକହୀନ ବିଶାଳ ଆଖି । ଅଚଳ ସ୍ଥାଣୁଭିର ପ୍ରତୀକ ରୂପେ ପଦାହିଁ ରହିତ ଏକ ବିଗ୍ରହ, ସର୍ବ ଶକ୍ତିମତ୍ତାର ପ୍ରତୀକ ରୂପେ ଦୁଇଟି ବିଶାଳଭୁଜ । ସେ ଅଚଳ ଅଥଚ ସର୍ବବ୍ୟାପୀ, ସର୍ବଦ୍ରଷ୍ଟା ଅଥଚ ଅସଂପୃକ୍ତ । ସର୍ବଶକ୍ତିମାନ ଅଥଚ ଅକର୍ତ୍ତା । ଅନନ୍ତ ଆକାଶର ଘନକୃଷ୍ଣ ନୀଳମାପରି ଅକଳନୀୟ ଅଥଚ ମୁଖ ଉଦର ଅବୟବାଦି ଚିହ୍ନିତ ମାନବୀ ମନର ପରିଚିତ

Digitized by srujanika@gmail.com

ଏକ ସତ୍ତା । ଆର୍ତ୍ତଜଜ୍ଞାସୁ ଅର୍ଥାର୍ଥୀ ଜ୍ଞାନୀ ସମସ୍ତଙ୍କ ପାଇଁ ସେ ମୂଳାଶ୍ରୟ । ଶୈବ, ଶାକ୍ତ, ବୌଦ୍ଧ, ଜୈନ, ବୈଷ୍ଣବ ସମସ୍ତଙ୍କର ପରମ ଆରାଧ୍ୟ । ଏତଦ୍‌ସତ୍ତ୍ୱେ ବିଗ୍ରହ ଦାରୁମାତ୍ର ଏବଂ ତାଙ୍କର ନବକଳେବର ହୁଏ ।

ନବକଳେବର ପାଇଁ ଦାରୁ ଖୋଜିବାକୁ ବିଶ୍ୱାବସୁଙ୍କ ବଂଶଧର ଦଇତାପତିମାନେ ଅନ୍ୟାନ୍ୟ ଅଧିକାରୀମାନଙ୍କ ଗହଣରେ ବାହାରିଲେ । ସ୍ୱାଧୀନ ବିଚାରର ଅବକାଶ ନାହିଁ, ସବୁ ଆଗରୁ ନିର୍ଦ୍ଧାରିତ ରହିଛି । କେଉଁଠାକୁ ଯିବେ, କ'ଣ କରିବେ, କିପରି ଦାରୁ ଚିହ୍ନିବେ, ଇତ୍ୟାଦି । ସବୁ ସହସ୍ରାଧିକ ପରମ୍ପରା-ଦ୍ୱାରା ନିୟମାନୁବଦ୍ଧ, ଶିଳାଲେଖପରି ଅପରିବର୍ତ୍ତନୀୟ ସେ ସମସ୍ତ ପୁରାତନ ନିୟମ । ଉଦ୍ଭିଦ ଜଗତର ଅନନ୍ତଲମ୍ବ ପରିସର ଭିତରୁ ଦାରୁ ବାଛିପାଇପାରିବ, ତାକୁ କିନ୍ତୁ ନିର୍ଦ୍ଦିଷ୍ଟ କରିବାପାଇଁ ବିଭିନ୍ନ ଲକ୍ଷଣଦ୍ୱାରା ଅନ୍ୱେଷଣର ପରିଧିକୁ କ୍ରମଶଃ ସଂକୀର୍ଣ୍ଣ କରିଆଣି କେବଳ ଗୋଟିଏ ଦାରୁକୁ ହିଁ ଚିହ୍ନିତ କରାଯାଇଛି । ପ୍ରଥମ ପର୍ଯ୍ୟାୟରେ ଦାରୁ କେବଳ ନିମଗଛରୁ ହିଁ ସଂଗୃହୀତ ହେବ । ନିମଗଛ ତ ଲକ୍ଷାଧିକ, ତେବେ ତା' ଭିତରୁ କିପରି ବାଛିବା ?...ତା ନିକଟରେ ଶ୍ମଶାନ ଥିବ ଅସ୍ତୁ ! ସେପରି ମଧ୍ୟ ଅନେକ ମିଳିବ । ପାର୍ଶ୍ୱରେ ଶିବ ମନ୍ଦିର, ପୁଷ୍କରିଣୀ, ହେଲ ତା' ମଧ୍ୟ ଦୁଷ୍ପ୍ରାପ୍ୟ ନୁହେଁ । ଗଛପାଖରେ ସାହାଡ଼ା, ବେଲ ଏବଂ ବରୁଣ ଗଛ ତାଙ୍କ ମନକୁ ଉଠିଥିବେ । ଏଇ ପର୍ଯ୍ୟାୟରେ ସାମାନ୍ୟ ସଂଶୟ ଆସିଯାଉଅଛି । ଏପରି କ'ଣ ମିଳିବ ? କେବଳ ସେତିକି ନୁହେଁ, ତା' ମୂଳରେ ସାପ ହୁଙ୍କା ଥିବ, ହୁଙ୍କାରେ ନାଗ ବାସ କରୁଥିବ । ଗଛରେ ଆଘାତ ଚିହ୍ନ ନଥିବ, ଗଣ୍ଡିରୁ ହିଁ ଶାଖା ବିସ୍ତାର ହୋଇଥିବ, ସେଥିରେ କେବେ କୌଣସି ପକ୍ଷୀ ବସାବାନ୍ଧି ନଥିବେ ! ଅସମ୍ଭବ ! ଏହା କେବେ ମିଳି ନ ପାରେ । ଆଚ୍ଛା, ଯଦି ମିଳେ ? ତାହାହେଲେ ତା'କୁ ଅଦ୍ଭୁତ ବୋଲି ସ୍ୱୀକାର କରିବାକୁ ପଡ଼ିବ; କିନ୍ତୁ ତାହା ଅଦ୍ଭୁତ ନୁହେଁ । ପ୍ରତ୍ୟେକ ନବକଳେବରକୁ ଏହିପରି ଦାରୁ ହିଁ ସଂଗ୍ରହ କରାଯାଏ । ଏତଦ୍ ବ୍ୟତିରେକ ଅନ୍ୟ ଦାରୁ ସଂଗ୍ରହ କରିବାର ଅଧିକାର କାହାର ନାହିଁ ଏବଂ ଅଦ୍ୟା-ବଧି ଠାକୁରଙ୍କର ବହୁଶହ ଥର ନବକଳେବର ହୋଇ ସାରିଲାଣି ।

ଏହାକୁ କେବଳ କାକତାଳୀୟ ନ୍ୟାୟରେ ସ୍ୱେଚ୍ଛାଚାରୀ ଘଟଣା ବୋଲି କହିବା ପାଇଁ ଯୁକ୍ତିସର୍ବସ୍ୱ ମନର ମଧ୍ୟ ସାହାସ ହୁଏନାହିଁ, ସାମାନ୍ୟ ବିସ୍ମୟ ଆସେ । ତଥାପି ସନ୍ଦେହ ଉତ୍‌ଫଣ ସର୍ପପରି ଗର୍ଜିଉଠେ । ଆଗ କ'ଣ ହେଉଥିଲା, ଏପରି ଦାରୁ ମିଳୁଥିଲେ ନା ନାହିଁ, ତା'ର ପ୍ରତ୍ୟକ୍ଷ ପ୍ରମାଣ ଆମପାଇଁ ଅନ୍ତତଃ ନାହିଁ । ବର୍ତ୍ତମାନ

Digitized by srujanika@gmail.com

ମିଳୁଥିବା ଦାରୁଟିକୁ ନିଜେ ଦେଖିନେଲେ ସଂଶୟ ଭଞ୍ଜନ ହୋଇଯିବ । ଯେଉଁ ନିୟମ ସବୁ ବର୍ଣ୍ଣନା କରିଗଲି, କେବଳ ସେତିକ ଏକାଠି ମିଳିବା ଏବଂ ନିଶ୍ଚିତ ରୂପେ ନବକଳେବରର ସମୟକୁ ମଙ୍ଗଳାଙ୍କର ସ୍ୱପ୍ନାଦେଶ ଅନୁସାରେ ମିଳିବା ସାଧାରଣ ବୁଦ୍ଧିର ବୋଧଗମ୍ୟ ସୀମାଭିତରର ବିଷୟ ନୁହେଁ । ତଥାପି ମନର ସଂଶୟକୁ ପରିଭୂତ କରିବାକୁ ବ୍ରହ୍ମଦାରୁ, ପ୍ରଭୁଙ୍କର ଆୟୁଧ ଚହ୍ନିତ ମଧ ହୋଇଥିବ । ନିର୍ଦ୍ଦିଷ୍ଟ ସୀମା ଭିତରେ ଗୋଟିଏ ନିର୍ଦ୍ଦିଷ୍ଟ ଧାରାରେ ଚିନ୍ତା କରିବାକୁ ଶିଖିଥିବା ମଣିଷର ମନ ଅନୁଦାର ସଂକୀର୍ଣ୍ଣତାକୁ ପରିହାର କରିପାରେ ନାହିଁ । ଏହି ହେତୁରୁ ଗୋଟିଏ ଧର୍ମାବଲମ୍ବୀ ଅନ୍ୟ ଧର୍ମାବଲମ୍ବୀର ମତବାଦକୁ ଗ୍ରହଣ କରିବା ଦୂରେ ଥାଉ ହୃଦ୍‌ବୋଧ ମଧ କରିପାରେ ନାହିଁ । ଜଣକପାଇଁ ଆଉ ଜଣେ ଅନ୍ଧବିଶ୍ୱାସୀ ରକ୍ଷଣଶୀଳ ମୂର୍ଖ ସେ ଉଭୟଙ୍କୁ ଏବଂ ସେମାନଙ୍କର ଆଶ୍ରୟ ସ୍ୱରୂପ ମୂଳତଃ ଧର୍ମଭାବକୁ ଉପହାସ କରୁଥିବା ଆଧୁନିକ ବ୍ୟକ୍ତି କିନ୍ତୁ ବୁଝିପାରେ ନାହିଁ ଯେ, ସେ ମଧ ଆଜି ଏକ ଅନ୍ଧବିଶ୍ୱାସର ଅନ୍ଧକାର ମଧ୍ୟରେ ଦିଗ୍‌ଭ୍ରାନ୍ତ । ତା'ର ମଧ ଆଉ କିଛି ବୁଝିବାଭଳି ଶକ୍ତି ନାହିଁ । ତା'ପାଇଁ ପଞ୍ଚେନ୍ଦ୍ରିୟହିଁ ସତ୍ୟାନୁଭବର ଏକମାତ୍ର ପନ୍ଥା, ଯୁକ୍ତି ହିଁ ମାଧ୍ୟମ । ଧର୍ମାଦି ସମସ୍ତ ଏକ ଦୂଷିତ ପରିତ୍ୟାଜ୍ୟ ପରମ୍ପରା । ବିଜ୍ଞାନ ନାମରେ ଏହା କେଉଁପ୍ରକାର ବୈଜ୍ଞାନିକ ମନୋବୃତ୍ତି ? ଏତେ ଅସହିଷ୍ଣୁତା, ଏତେ ଅନୁଦାରତା କ'ଣ ବିଜ୍ଞାନ ଶିକ୍ଷାଦିଏ ? ଅପକ୍ଷପାତିତା ଏବଂ ଫଳାଭିସନ୍ଧିନିର୍ମୁକ୍ତ ଅନୁସନ୍ଧିତ୍ସା ପରି ବିଜ୍ଞାନର ଭିତ୍ତିଭୂମି ?

ପ୍ରତ୍ୟେକ ଯୁଗରେ ଅଧିକାଂଶ ବ୍ୟକ୍ତି ସଂକୀର୍ଣ୍ଣମନା, ଅନୁଦାର ଏବଂ କାର୍ପଣ୍ୟ ଦୋଷଦୁଷ୍ଟ । ସେଇମାନେ ହିଁ ଅନ୍ଧବିଶ୍ୱାସୀ, ନିଜର ବିଶ୍ୱାସକୁ ଏକମାତ୍ର ସତ୍ୟ ବୋଲି ଗ୍ରହଣ କରିବା ହିଁ ଅନ୍ଧବିଶ୍ୱାସ । ନିର୍ବିରୋଧ ସରଳ ବିଶ୍ୱାସକୁ, ସମ୍ପୂର୍ଣ୍ଣ ସମର୍ପିତ ଅଟଳ ଦୃଢ଼ତାକୁ ଅନ୍ଧବିଶ୍ୱାସ କହିବା କେବଳ ଅଜ୍ଞତାର ପରିଚୟକ । ସରଳ ବିଶ୍ୱାସ ଏକ ସିଦ୍ଧି, ଅନ୍ଧବିଶ୍ୱାସ ଏକ ଦୁରାରୋଗ୍ୟ ବ୍ୟାଧି, ଏକ ଦୁଃସାଧ ବିକୃତି; କିନ୍ତୁ ପ୍ରତ୍ୟେକ ଯୁଗରେ ପୁଣି ଜ୍ଞାନପୁରୁଷ ଅଛନ୍ତି, ଯେଉଁମାନଙ୍କର କାର୍ପଣ୍ୟ ଦୋଷ ନାହିଁ, ଯେଉଁମାନେ ସର୍ବ ଧର୍ମସହିଷ୍ଣୁତା ଅର୍ଜନ କରିଛନ୍ତି । ଏକ ଧର୍ମଭୁକ୍ତ ହେଲେ ମଧ ଅନ୍ୟ ଧର୍ମର ନିର୍ବିରୋଧ ତାଙ୍କର ସହଜ ସାଧନା । ଏ ବିଜ୍ଞାନ ଯୁଗରେ ମଧ ଆଇନ୍‌ଷ୍ଟାଇନ୍ ବା ହ୍ୱାଇଟ୍‌ହେଡ୍ ପରି ଜ୍ଞାନପୁରୁଷ ଅଛନ୍ତି, ଯେଉଁମାନେ ତଥାକଥିତ ସ୍ୱଳ୍ପଜ୍ଞାନର ଦର୍ପରେ ଅନ୍ୟକୁ ଉପହାସ କରୁଥିବା ଅନ୍ଧବିଶ୍ୱାସୀଙ୍କ ଊର୍ଦ୍ଧ୍ୱରେ ।

Digitized by srujanika@gmail.com

ତାପରେ ମିଳିଥିବା ଦାରୁଦେହରେ ଶଙ୍ଖ, ଚକ୍ର, ଗଦା, ପଦ୍ମର ଚିହ୍ନ ଦେଖିବାକୁ ବହୁ ଲୋକଙ୍କର ସମାଗମ ହୋଇଥିଲା । ବିଶ୍ୱାସକୁ ନେଇଥିବା ବହୁ ଆଧୁନିକ ରୁଚିସମ୍ପନ୍ନ ବ୍ୟକ୍ତି ମଧ୍ୟ 'ଥରେ ଦେଖିନେବା' ମନୋବୃତ୍ତିରେ ପହଞ୍ଚିଥିଲେ । ଚିହ୍ନ ଗୁଡ଼ିକୁ ସମସ୍ତ ପୂର୍ବ ବିଶ୍ୱାସର ପରଳ ଫିଟାଇ ଦେଖିଲେ ମଧ୍ୟ ସନ୍ଦେହ ନଆସିବା କଥା । ତାହା କେହି ନଖରେ ବା ହତାଣରେ ଖୋଳି ନିଷ୍ଠପୂ ଆଙ୍କିତ କରିନାହିଁ । ଯେପରି ଗଛମୂଳେ କେହି ନାଗକୁ ପୋଷିନାହିଁ ବା ଡାଳ ଉପରୁ ପକ୍ଷୀଙ୍କୁ ହୁରୁଡ଼େଇ ନାହିଁ ବା ଧରିବାନ୍ଧି ଗଛର ତିନୋଟି ଶାଖା କରିନାହିଁ । ପୂର୍ଣ୍ଣ ସମୃଦ୍ଧ ପୁଷ୍କଳବପୁ ଦାରୁରେ ଏକ ବ୍ୟକ୍ତିତ୍ୱ ପରିସ୍ଫୁଟ । ତା'ର ଅକ୍ଷତ ଶରୀରରେ ଏ ଚିହ୍ନଗୁଡ଼ିକ ଅତି ସ୍ପଷ୍ଟ ଏବଂ ସ୍ୱାଭାବିକ । ଯଦି ତାହା କୌଣସି ପ୍ରାକୃତିକ ନିୟମରେ ହୋଇଥାଏ, ଯାହା କି ଖୁବ୍ ସମ୍ଭବ ସେହି ନିୟମର ପଶ୍ଚାତ୍‌ରେ ଏକ ନିୟାମକର ସୂଚନା ମିଳୁଛି । ସେଗୁଡ଼ିକ ଠିକ୍ ସେହିପରି ରୂପନେବା କେବଳ ଆକସ୍ମିକ ଭାବେ ସମ୍ଭବ ନୁହେ । ଯଦି ବା ଧାର୍ମିକତାର ଚରମ ଅଭିବ୍ୟକ୍ତି ରୂପେ ଏହାକୁ ଆକସ୍ମିକ କୁହାଯାଏ, ତେବେ ଏହି ଆକସ୍ମିକତା ହିଁ ଆଦି ସୃଷ୍ଟିର ଆକସ୍ମିକତା । ଜଡ଼ରେ ଆଦି ପ୍ରାଣ ସଞ୍ଚାରର ଆକସ୍ମିକତା । ମହାକାଶରେ ପ୍ରବଳବେଗରେ ବିଘୂର୍ଣ୍ଣିତ ବିରାଟ ଉଲ୍‌କା ପିଣ୍ଡର ସଞ୍ଚାର ସତ୍ତ୍ୱେ ଏ ଧୂଳିକଣାବତ୍ ପୃଥିବୀ ଭସ୍ମସାତ୍ ନହେବା ପରି ଆକସ୍ମିକତା ! ଯଦି ଏ ଅକଳନୀୟ ଆକସ୍ମିକତାର କର୍ତ୍ତା କେହି ଥାଏ ବୋଲି ବୁଦ୍ଧି ଗ୍ରହଣ କରିପାରୁଛି, ସେହି ଅଦ୍ଭୁତକର୍ମାଙ୍କୁ ହିଁ ବ୍ରହ୍ମଦାରୁ ବିଗ୍ରହ ରୂପରେ ରତ୍ନସିଂହାସନରେ ପ୍ରତିଷ୍ଠା କରାହୋଇଛି—

ସମଗ୍ର ମାନବ ଚେତନା କାର୍ପଣ୍ୟମୁକ୍ତ ହେଉ !

ଅନ୍ଧବିଶ୍ୱାସର ବିନାଶ ହେଉ !

ଦେହି ବୁଦ୍ଧିମ୍ ପ୍ରଶସ୍ତମ୍ ! ଦେହି ଚିତ୍ତମ୍ ପ୍ରଶସ୍ତମ୍—

Digitized by srujanika@gmail.com

# ଆପାତତଃ

ବୟସର ଧାନ କିଆରୀରେ ଫସଲ ପାଚିବାକୁ ପ୍ରାୟ ଚାଳିଶବର୍ଷ ଲାଗିଯାଏ। 'ଚାଳିଶା'ର ମାର୍ଗଶୀର ସାଙ୍ଗକୁ କିଛି କୁହୁଡ଼ି ମଧ୍ୟ ଚାରିଆଡ଼ୁ ଘୋଟେଇ ହୋଇ ଆସେ। ଚିହ୍ନା ମୁହଁଗୁଡ଼ାକ ଉପରେ ଗୋଟାଏ ଲେଖାଁ ପରଳ ମାଡ଼ିଯାଏ। ସେଗୁଡ଼ିକର ସୀମାରେଖା ସବୁ ଝାପ୍ସା ଦେଖାଯାନ୍ତି। ଖୁବ୍ ନିଶ୍ଚିତ, ନିଃସନ୍ଦେହ ହୋଇ ଆଉ କିଛି ରହେ ନାହିଁ। ପଚାରିଲେ କୁହାଯାଏ, "ହଁ, ସେ ବସ୍ତୁଟା ପ୍ରାୟ ଏଇୟା ହୋଇପାରେ।" ...ବିଜ୍ଞାନ ଯୁଗର ବହୁ ସାଫଲ୍ୟ ପରେ ବିଂଶ ଶତାବ୍ଦୀର ପ୍ରାରମ୍ଭକୁ ଯେତେବେଳେ ଜ୍ଞାନର ପରିସର ପ୍ରଶସ୍ତ ହେବାକୁ ଲାଗିଲା, ପାକଳ ଧରି ଆସିଲା ବୈଜ୍ଞାନିକ ବୁଦ୍ଧି, ସେତିକବେଳେ ସେଇଭଳି ଗୋଟାଏ କୁହୁଡ଼ି ମାଡ଼ିଆସିଲା। ଆଇନଷ୍ଟାଇନ୍ ମହାଶୟ ଗୋଟାଏ ଆପେକ୍ଷିକ ତତ୍ତ୍ୱ ଆଣି ଥୋଇଲେ। ଯାହା ଉପରେ ଆଗରୁ ହଲପ କରି କୁହାଯାଇ ପାରୁଥିଲା, ସେ ସବୁ ପାଇଁ କୁହାଗଲା ଯେ ତାହା ହୁଏତ ଖୁବ୍ ସମ୍ଭବ, କିନ୍ତୁ ନିଶ୍ଚିତ ନୁହେଁ। 'ଦୁଇ'ରେ 'ଦୁଇ' ମିଶିଲେ ଆଉ ନିଶ୍ଚିତ ଭାବରେ 'ଚାରି' ହେବା ସେତେ ସହଜ ବୋଧ ହେଲାନାହିଁ। ସୂର୍ଯ୍ୟ ପୂର୍ବରୁ ଉଦୟ ହେବା ପରି କୌଣସି ଚିରନ୍ତନ ଅପରିବର୍ତ୍ତନୀୟ ନିଶ୍ଚିତ ସତ୍ୟ ନୁହେଁ। ଯାହା ଦିଶୁଚି ତାହା ଠିକ୍ ତା' ନୁହେଁ, ଯାହା ଶୁଭୁଚି ତାହା ଠିକ୍ ତା' ନୁହେଁ! ମଣିଷ ମନର ଦିଗ୍‌ବଳୟରୁ ଏ କୁହୁଡ଼ି ମାଡ଼ି ଆସିଲା; ଅନିଶ୍ଚିତତାର କୁହୁଡ଼ି। ଜୀବନର ରହସ୍ୟ ଚାରିଆଡ଼ୁ ଘନୀଭୂତ ହୋଇ ଗମ୍ଭୀରରୁ ଗମ୍ଭୀରକୁ ବୁଡ଼ିଗଲା। କୌଣସି ବିଷୟରେ ଶେଷ ନିଷ୍ପତ୍ତି ଆଉ ନିଆଯାଇ ପାରିଲାନାହିଁ। ସବୁ କେବଳ ଆପାତସିଦ୍ଧ, କେବଳ କିଛି ସମୟ କାମ ଚଳେଇବା ପାଇଁ ଗୋଟିଏ ଛାମୁଣ୍ଡି ଆଉ ଛାଇ।

ଯେଉଁମାନେ କିନ୍ତୁ 'ଦୁଇ-ଦୁ ଗୁଣେ ଚାରି'ର ନିୟମିତ ପୃଥିବୀରେ ନିଶ୍ଚିତ ଶ୍ରଦ୍ଧା ତାହାଙ୍କୁ ନେଇ ଶୋଇ ଯାଇଥିଲେ, ତାଙ୍କୁ ଚମକେଇ ଦିଆଗଲା। ତାଙ୍କୁ କୁହାଗଲା ଯେ, ଗୋଟିଏ ଆଖିରେ ଯାହା ଦିଶେ, ତାହା ଆଉ ଆଖିରେ ଦିଶେ ନାହିଁ ଏବଂ ଉଭୟ ଆଖି ଖୋଲି ଦେଖିଲେ ସେ ଆଉ ପ୍ରକାରେ ଦିଶେ।

Digitized by srujanika@gmail.com

କୁହାଗଲା ଯେ, ଯାହା ରଙ୍ଗ ବୋଲି ଦିଶେ, ତାହା ପ୍ରକୃତରେ ରଙ୍ଗ ନୁହେଁ, ମଣିଷକୁ ଯାହା ଦିଶେ ମାଛିଟିକୁ ତାହା ଦିଶେ ନାହିଁ । ସାବୁନ ଫେଣର ପ୍ରତ୍ୟେକ ବୁଦ୍‌ବୁଦ୍‌ରେ ପ୍ରତିଫଳନ ହେଲାପରି ତା' ଆଖିରେ ହୁଏତ ବସ୍ତୁ ବିମ୍ବିତ ହେଉଥିବ । ଏଣୁ ବିଭିନ୍ନ ପଶୁପକ୍ଷୀଙ୍କୁ ଆମେ କ'ଣ ଭଳି ଦିଶୁ ବା ଜଗତ କିଭଳି ଦିଶେ କହିବା କଠିନ । ବହୁଦିନ ତଳେ ଗ୍ରୀକ୍ ଦାର୍ଶନିକ ଡିମୋକ୍ରାଇଟସ୍ କହିଲେ, "ଅଣୁ ସତ୍ୟ, ଶୂନ୍ୟ ସତ୍ୟ, ବାକି ସମସ୍ତ କେବଳ ଗୋଟିଏ ଲେଖାଁ ମତ ।" ସେ ସମୟରେ ତାଙ୍କୁ ଅନେକେ ହସିଥିବେ; ହସିଥିବେ ବହୁ ଦେଶୀ ଏବଂ ବିଦେଶୀ ପଣ୍ଡିତ, ଆମ ଅମଳଯାଏ; କିନ୍ତୁ ବିଜ୍ଞାନ କ୍ଷେତ୍ରରେ ତାଙ୍କ କଥା ଗୋଟାଏ ନିଷ୍ପତ୍ତି ରୂପେ ଜାରି ରହିଲା ଅନେକ ଦିନ ପର୍ଯ୍ୟନ୍ତ । 'ନେହ ନାନାସ୍ତି କିଞ୍ଚନ' ଭଳି ତାଙ୍କ ଉକ୍ତିରେ ଗୋଟାଏ ଗମ୍ଭୀର ଏବଂ ଚମକପ୍ରଦ ବିବୃତି ଦିଆଯାଇଛି ଏବଂ କିଛିଦିନ ଧରି ସେ କ୍ଷେତ୍ରରେ ଏହା ହିଁ ଶେଷ ସିଦ୍ଧାନ୍ତରୂପେ ଅନେକେ ଗ୍ରହଣ କରି ନେଇଛନ୍ତି ।

କିନ୍ତୁ ଦେଖାଗଲା ଯେ, ଅଣୁ ମଧ୍ୟ ଶେଷ କଥା ନୁହେଁ, ଅବିଭାଜ୍ୟ ନୁହେଁ । 'ଶୂନ୍ୟ'ର ଶୂନ୍ୟତା କୌଣସି ନିଶ୍ଚିତ ସତ୍ୟ ନୁହେଁ । ପରମାଣୁ ଜଗତ୍ ଉନ୍ମୋଚିତ ହୋଇ ଦେଖାଗଲା ଯେ, ଅଣୁଠାରୁ ଆହୁରି ଅଣୀୟାନ୍ ବସ୍ତୁ ରହିଛନ୍ତି । ଏଣେ ଗ୍ରହରୁ ଗ୍ରହାନ୍ତରକୁ ଯାତ୍ରା ଯୋଜନା କଲାବେଳେ ଶୂନ୍ୟକୁ ମଧ୍ୟ ପ୍ରଶ୍ନ କରାଗଲା । ମହାଶୂନ୍ୟର ଉପାଦାନ ଅନ୍ୱେଷଣ କରାଗଲା । ଦେଖାଗଲା ଯେ, ତାହା ସମ୍ପୂର୍ଣ୍ଣ ଶୂନ୍ୟ ନୁହେଁ । ଖୁବ୍ ପାତଳ ବସ୍ତୁରେଣୁରେ ତାହା ହୁଏତ ପରିପୂର୍ଣ୍ଣ । ଟଲେମି, କୋପରନିକ୍‌ସ, ଗାଲିଲିଓ ବା ଭାସ୍କରାଚାର୍ଯ୍ୟ ସମେତ ପୁରାତନ ଜ୍ୟୋତିର୍ବିଦ୍ ପଣ୍ଡିତ ଯାହା କହିଗଲେ, ତାହା ସେ ସମୟ ପାଇଁ ହୁଏତ ଶେଷ ସିଦ୍ଧାନ୍ତ ଥିଲା; କିନ୍ତୁ କ୍ରମେ ଉତ୍ତରୋତ୍ତର ମତବାଦ ଆସି ପୁରାତନର କ୍ରମାନ୍ୱୟ ସଂଶୋଧନ କରି ଚାଲିଛି । ଏଣୁ ଆଇନ୍‌ଷ୍ଟାଇନ ବା ତାଙ୍କ ପରବର୍ତ୍ତୀ ନାର୍‌ଲିକର୍‌ଙ୍କୁ ଚୂଡ଼ାନ୍ତ ନିଶ୍ଚିତତାରେ ଥୋଇଦେଲେ, ଅହରହ ନୂଆ ବିଜୟରେ ସୂର୍ଯ୍ୟ ଫୁଟାଉଥିବା ମାନବ-ସମ୍ଭାବନା ଅବରୁଦ୍ଧ ହୋଇଯିବ । ଏ ଅଦ୍ଭୁତ ଉଦ୍ଭିଦରେ କେଉଁ ଶତାବ୍ଦୀରେ କେଉଁ ଫୁଲ ଫୁଟିବ କହିବା କଠିନ । ।

ନିଶ୍ଚିତ ସତ୍ୟ ବୋଧହୁଏ ସବୁବେଳେ ଅପସରି ଯାଉଥିବା ଗୋଟିଏ ବିନ୍ଦୁ, ଯାହା ଅନନ୍ତକାଳ ପାଇଁ କେବଳ ଅନୁସରଣୀୟ; ଯାହାକୁ ପାଖେଇ ହୁଏ, କିନ୍ତୁ ପାଇ ହୁଏ ନାହିଁ । ପାଖେଇ ଆସିବାର ଏଇ ଚିରନ୍ତନ ପ୍ରକ୍ରିୟାରେ ମଣିଷ ମନର

Digitized by srujanika@gmail.com

ସମସ୍ତ ବିବର୍ତ୍ତନ ବର୍ତ୍ତମାନ ପର୍ଯ୍ୟନ୍ତ ରହିଯାଇଛି, ଏବଂ ରହିଯିବ ମଧ୍ୟ । ପ୍ରାୟତଃ ସତ୍ୟକୁ ନେଇ ଆମେ ବଞ୍ଚିରହୁ । ସବୁ କେବଳ ଆପାତ-ସିଦ୍ଧ, କେବଳ ସମ୍ଭାବନାରେ ଊଣା ଅଧିକ ମାତ୍ରାଭେଦ । ସମ୍ଭାବନାର ମାତ୍ରା ଯେତେ ଅଧିକ, ସେଥିରେ ସତ୍ୟର ପ୍ରଶସ୍ତି ସେତେ ବେଶି । ପୂର୍ବଦିଗରୁ ସୂର୍ଯ୍ୟ ଚନ୍ଦ୍ରର ଉଦୟ ପରି, ଋତୁଚକ୍ରର ଘୂର୍ଣ୍ଣନ ପରି ହୁଏତ ଜନ୍ମ ଏବଂ ମୃତ୍ୟୁ ପରି ଏଗୁଡ଼ିକ ଅବଶ୍ୟମ୍ଭାବୀ । ମଣିଷ ଜ୍ଞାନର ପରିସର ଭିତରେ ଏହାକୁ ବିରୋଧ କଲାଭଳି ଦୃଷ୍ଟାନ୍ତ ହୁଏତ ନାହିଁ । ତଥାପି ଏହାକୁ ଅବିକମ୍ପିତ ଚୂଡ଼ାନ୍ତ ସତ୍ୟ ବୋଲି କହିହେବ ନାହିଁ । ସୂର୍ଯ୍ୟ ଗର୍ଭରେ ହଠାତ୍ ବିସ୍ଫୋରଣ ଘଟି ସୂର୍ଯ୍ୟପିଣ୍ଡ ନିଶ୍ଚିହ୍ନ ହୋଇଯାଇପାରେ । କୌଣସି ଦୂରନ୍ତ ତାରକାର ଆକର୍ଷଣରେ ପୃଥିବୀ ଆଦି ସମସ୍ତ ଗ୍ରହ ମହାଶୂନ୍ୟରେ ବିକ୍ଷିପ୍ତ ହୋଇଯାଇପାରନ୍ତି । ଜରାବ୍ୟାଧିର କୌଣସି ଅଦ୍ଭୁତ ଉପଶମରଦ୍ୱାରା ମୃତ୍ୟୁକୁ ମଧ୍ୟ ଲଙ୍ଘନ କରିଯାଇପାରେ ।

ଦେଖିବା, ଶୁଣିବା ଆଦି ଇନ୍ଦ୍ରିୟରେ ଯେପରି ସବୁକଥା ଜଣାପଡ଼େ ନାହିଁ, ଅନେକ ବାକି ରହିଯାଏ, ସେହିପରି ଅନ୍ୟାନ୍ୟ ଇନ୍ଦ୍ରିୟ ମଧ୍ୟ ଶେଷ କଥା ଗ୍ରହଣ କରିପାରନ୍ତି ନାହିଁ । ଯାହା ଗ୍ରହଣ କରିହୁଏ ନାହିଁ, ତାକୁ ମନବଳରେ ଅନୁମାନ କରିଯାଏ; କିନ୍ତୁ ମନ ଯେତେ ପ୍ରତାପଶାଳୀ ହେଲେ ସୁଦ୍ଧା, ବିଚରା, ସେ ବି ଗୋଟିଏ ଇନ୍ଦ୍ରିୟ । ତା'ର ମଧ୍ୟ ଦୌଡ଼ ସରିଯାଏ । ସେ ନିଜେ ବୁଝିଯାଏ ଯେ, ତା' ହାତ ନ ପାଇଲା ଭଳି ଗଭୀର ଅରଣ୍ୟର ଅନେକ ଉଚ୍ଚ ଉଚ୍ଚ ଡାଳ ଅଛି, ଅନନ୍ତ ମହାସମୁଦ୍ରରେ ଅନେକ ଗଭୀର ଶୀତଳତା ଅଛି, ଅନେକ ଅଜ୍ଞାତ ଢେଉ ଅଛି । ଗଣିତଶାସ୍ତ୍ରର ହର-ଗୁଣ-ଫେଡ଼-ମିଶା ମନରେ ନିମ୍ନପ୍ରାଥମିକ ଅବସ୍ଥାରେ ହିଁ ସରିଯାଏ । ସେଥିରେ ନାବାଳକ ମନର କର୍ଷଣ ସରିଯାଏ । ବଳ ଚଢ଼ିଆସିଲେ ତେଣିକି ଗୁଡ଼ାଏ ଅନିର୍ଦ୍ଦିଷ୍ଟ ଗାଣିତିକ ଧାରାକୁ ନେଇ ଅଙ୍କ କଷାଯାଏ । କେଉଁଠି ଅନନ୍ତର ସଙ୍କେତ ନେଇ ବା କେଉଁଠି ଶୂନ୍ୟକୁ ପାଖେଇ ଆସୁଥିବା କୌଣସି ସଙ୍ଖ୍ୟାହୀନ ସଂଖ୍ୟାକୁ ନେଇ ଧାରା ବିତେଇ ଦିଆଯାଏ । ଯେତେବେଳଯାଏଁ ଏ ଅନିର୍ଦ୍ଦିଷ୍ଟର ସଂଘାତ ଆସି ନ ଲାଗିଛି, ଗଣିତର ସବୁ ସଂଖ୍ୟା ଗୋଟିଏ ଲେଖାଁ ବର୍ତ୍ତୁଳ ଅବିଚଳିତ ସତ୍ୟ । ତା'ପରେ କିନ୍ତୁ ଥରେ ତା'ର ହାଓ୍ୱା ଲାଗିଗଲେ ସେଗୁଡ଼ିକ ଉପରେ ଧୂଆଁ ଘେରିଯାଏ । କଥିତ ଅଛି, ଆଲ୍ବର୍ଟ ଆଇନ୍‌ଷ୍ଟାଇନ୍ ତାଙ୍କ ପଡ଼ଶାଘରର ସାନଝିଅଟିକୁ ପ୍ରାଥମିକ ଗଣିତ ଶିଖାଇବାରେ ଘୋର ଆମୋଦ ପାଉଥିଲେ । ଦିନେ ତାଙ୍କ ବଗିଚାରେ ଧ୍ୟାନମଗ୍ନ ଅବସ୍ଥାରେ ଭ୍ରାମ୍ୟମାଣ ବିଶ୍ୱ-ଖଣ୍ଡ

Digitized by srujanika@gmail.com

ବିଷୟ ଚିନ୍ତା କଲାବେଳେ ଝିଅଟି ତାଙ୍କ ଜାମାପଟା ଓଟାରି ତାଙ୍କୁ ସ୍ୱାଭାବିକ ଅବସ୍ଥାକୁ ଆଣିବାକୁ ଚେଷ୍ଟାକଲା । ସେ ତାକୁ ଅନେଇଲେ ସତ, କିନ୍ତୁ ତାଙ୍କ ଚେତନା ସେମିତି ବିସ୍ମୃତ ହୋଇ ରହିଥାଏ । ଝିଅଟି ତାଙ୍କ ମନନେଲା ଭଳି ଶିଖିଥିବା ଗଣିତରୁ ପଦେ ଉଦ୍ଧାର କରି କହିଲା, "କାଲି ତୁମେ କହିଥିଲ ନା ଦୁଇରେ ଦୁଇ ମିଶିଲେ ଚାରି ହୁଏ ?" ଯୋଗାରୂଢ଼ ଋଷି ଉତ୍ତରଦେଲେ, "ହଁ ହୋଇପାରେ, ଯଦି ଦୁଇ ଏବଂ ଦୁଇ ଅପରିବର୍ତ୍ତିତ ମୂଲ୍ୟ ରୂପେ ବ୍ୟବହାର କରନ୍ତି, ଏବଂ ଯୌଗିକ ଚିହ୍ନଟି ଗୋଟିଏ ନିର୍ଦ୍ଦିଷ୍ଟ ସମ୍ପର୍କର ପ୍ରଜ୍ଞାତ ହୁଏ ।" —ହୋଇପାରେ ଘଟଣାଟି ମନଗଢ଼ା; କିନ୍ତୁ ଖୁବ୍ ସମ୍ଭବ । ନିର୍ଦ୍ଦିଷ୍ଟକୁ ନେଇ ଗୋଟିଏ ଘନିଷ୍ଠ ପରିସର ଭିତରେ ନାବାଳକର ଖେଳ ବେଶ୍ ମଧୁର; କିନ୍ତୁ ଅନିର୍ଦ୍ଦିଷ୍ଟର ଅପରିମେୟ ବିସ୍ତାରପାଇଁ ଆଇନ୍‌ଷ୍ଟାଇନ୍‌ଙ୍କର ପୋଷିତ ବିଦୂର ନ ହେଲେ ଚଳୁନାହିଁ ।

ଯେଉଁ ସୃଷ୍ଟି ଘଡ଼ିଘଡ଼ିକେ ଆନ, ବଦଳିଯିବା ଯାହାର ଚିରନ୍ତନ ଧର୍ମ, ସେଇଠି ନିର୍ଦ୍ଦିଷ୍ଟ ଚକା ପକେଇ ବସିବା ପାଇଁ ସ୍ଥାନ କାହିଁ ? ପ୍ରତି ମୁହୂର୍ତ୍ତରେ ପବନର ସ୍ରୋତ ପରି, ଧୂଆଁର ରୂପପରି, ନଦୀର ଧାର ପରି ଉଦ୍ଭିଦ, ପଶୁପକ୍ଷୀ ମଣିଷ ବଦଳି ଚାଲିଛନ୍ତି । ଅଗ୍ନିରେ ସମିଧ ପଡ଼ି ଧୂଆଁ ଏବଂ ନିଆଁରେ ବିକ୍ଷିପ୍ତ ହୋଇଯାଉଛି । କାଲି ଏକମୁହାଁ ଅଜାଡ଼ି ହେଲାପରି ବୋଧହେଉଛି । ସତେ ବା ନଳଙ୍କ ରଥରେ ଆମେ ସବୁ ଆରୋହୀ । ଏଇଠି, "ହେଇ, ଉତ୍ତରୀ ଖସିଲା" କହି ଅନାଇଲାବେଳକୁ ସହସ୍ର ଯୁଣ ଘୁଞ୍ଚିଗଲାଣି । ନିର୍ଦ୍ଦିଷ୍ଟ କରି ନିର୍ଦ୍ଦ୍ୱନ୍ଦ୍ୱରେ ଚିହ୍ନିତ କରୁଥିବା ତର୍ଜମା ଏଇଠି ଅହରହ କମ୍ପିତ ହୁଏ । ସ୍ଥିର ରହିବା ଏଠି ମନା । ତାହା କେବଳ ଗୋଟିଏ ବିକଳ୍ପ ଚିନ୍ତା; ସ୍ୱାଭାବିକ ଅନୁଭବ ନୁହେଁ । ଅସ୍ଥିର ହେଲେ ଅନିର୍ଦ୍ଦିଷ୍ଟ ହେବା ସାଧାରଣ କଥା ।

ଯେ ନିର୍ଦ୍ଦିଷ୍ଟ, ସେ ଅପରିଚିତ ପରି ଠିଆ ରହେ । ତାକୁ ଜାଣିଛି କହିବା ଭୁଲ, ଜାଣିନାହିଁ କହିବା ମଧ୍ୟ ଭୁଲ । ସେ ଅନନ୍ତର ସମ୍ଭାବନାର ରାଜ୍ୟରେ ରହି କୌଣସି ଗୋଟିଏ ବିନ୍ଦୁରେ ଆମକୁ ଛୁଇଁଦିଏ । ସେଇ ଅକସ୍ମାତ୍ ସଂଯୋଗରୁ ଜିଜ୍ଞାସା ଜାଗ୍ରତ ହୁଏ, ତାକୁ ସମ୍ପୂର୍ଣ୍ଣ ଆୟତ୍ତ କରିବାକୁ, ତାକୁ ଜାଣିବାକୁ । ଖାଦ୍ୟ ଦେଖିଲେ ଯେପରି ଖାଇଦେଇ ତାକୁ ଆତ୍ମସାତ୍ କରିଯାଏ ଏବଂ ଭେକ ମେଣ୍ଟିଗଲେ ଯେମିତି ଗୋଟାଏ କ'ଣ ଜୟକଲା ଭଳି ଖୁସିଲାଗେ, ସେଭଳି ଆଉ ଯେତେ ସମ୍ଭୋଗ ଇଚ୍ଛା । ଆମ ଭିତରେ ଗୋଟାଏ କ୍ଷୁଧା ଅହରହ ଜଳୁଥାଏ ଏବଂ ଅଜଗର ଶୋଷିଲା ପରି ସେ ଦଶଦ୍ୱାର ବାଟେ ଗୁଡ଼ାଏ ସଂସାରକୁ ଶୋଷେ ।

Digitized by srujanika@gmail.com

ମନ ମଧ୍ୟ ଗୋଟିଏ ଦ୍ୱାର । ସେଇବାଟେ ବେଶି ଭାଗ କ୍ଷୁଧା ପ୍ରକାଶିତ ହୁଏ, ପ୍ରଶମିତ ମଧ୍ୟ ହୁଏ । ଫୁଲ୍‌ଟାଏ ଶୁଙ୍ଘିଲା ପରେ ବା ବଇଁଶୀ ଶୁଣିଲା ପରେ, ଅଙ୍କ ଛୁଇଁଦେଇଦେଲେ ବା ଗୋଟାଏ କ'ଣ ଜାଣିଦେଲେ, ମନ ମାଧ୍ୟମରେ ଏ ଭୋକ ମେଣ୍ଟିଯାଏ । କିନ୍ତୁ ସତେ କ'ଣ ମେଣ୍ଟେ ? ନା, ଯାହା ଗ୍ରହଣ କରାଗଲା, ସେ ସବୁକୁ ସତ ନିଜର ହୋଇ ରହେ ? ସେ କେବଳ ମୁହୂର୍ତ୍ତର ସଙ୍ଘାତ । କେବଳ ଏଇ ସମୟ ପାଇଁ; କେବଳ ଆପାତତଃ । ଆମେ କ୍ଷୀର ଖାଉଁ, ତା' ବିଷୟରେ ବି'ସ୍ତର କଥା ଯେ ନଜାଣୁ ଏମନ୍ତ ନୁହେଁ; କିନ୍ତୁ ଶେଷ କଥା ଜାଣୁ ନା । କାରଣ ଶେଷ କଥା ନାହିଁ । ଆଜିସବୁ ବସ୍ତୁରେ ଅନିର୍ଦ୍ଦିଷ୍ଟ, ଅନିର୍ଣ୍ଣେୟ ।

ଏଣୁ ବୋଧହୁଏ ଯେ ଜାଣିନାହିଁ ବୋଲି କହେ, ସେ କିଛି କିଛି ଜାଣିଛି ଏବଂ ଯେ ଜାଣିଛି ବୋଲି କହେ, ସେ ପ୍ରାୟ କିଛି ଜାଣିନାହିଁ । ଅସ୍ତିର ଢେଉ ପିଠିରେ କେବଳ ଗତି ହିଁ ସତ୍ୟ । ସେଇଠି ସବୁ ବିଶ୍ୱ ବିକ୍ଷୁବ୍ଧ ଏବଂ ଢେଉଢେଉକା; କିନ୍ତୁ ସେ ବଦଳିଯାଉଥିବା ବିଶ୍ୱରେଖାରେ ଗୋଟାଏ କ'ଣ ସୀମା ନାହିଁ । ଘାସଠାରୁ ଛେଳି ଭିନ୍ନ ଏବଂ ଛେଳିଠାରୁ ମଣିଷ ଭିନ୍ନ । ଏ ଘାସଠାରୁ ସେ ଘାସ ଭିନ୍ନ; ଏ ଛେଳିଠାରୁ ସେ ଛେଳି ଭିନ୍ନ । ଏ ମୁହୂର୍ତ୍ତର ଘାସଠାରୁ ସେ ମୁହୂର୍ତ୍ତର ଘାସ ବା ମୁଁ ଦେଖିବା ଛେଳିଠାରୁ ସେ ଦେଖିବା ଛେଳିରେ ତାରତମ୍ୟ ରହିଯାଉଛି । ତାରତମ୍ୟ ଯେତେ ଜଟିଳ, ସୀମା ସେତେ ପାଖାପାଖି । ଗୋଟାଏ ଆଉ ଗୋଟାଏ-ଠାରୁ ନିର୍ଦ୍ଦିଷ୍ଟ ଭାବରେ ଭିନ୍ନ ବୋଲି ତ ଆମେ ଜାଣିପାରୁଚେ ?—ଆଜ୍ଞା, ନା ! ପୁଣି ଡିମୋକ୍ରାଇଟସ୍‌ଙ୍କୁ ମନେପକେଇବାକୁ ପଡ଼ୁଚି । ଅଣୁ ସ୍ତରରେ ସବୁ ସମାନ । ଏ ସମୟ, ସେ ସମୟ, ବର୍ତ୍ତମାନ ଏବଂ ଅତୀତ, ସବୁ ଏକାକାର । ଅତଏବ ନିର୍ଦ୍ଦିଷ୍ଟ ହେବାକୁ ହେଲେ, ଯେଉଁ ଅବିକମ୍ପିତ ସୀମାରେଖାଟି ନହେଲେ ନଚଳେ, ତା'ର ଏକାନ୍ତ ଅଭାବ ରହିଯାଉଛି ।

କିନ୍ତୁ ଏ ଅସ୍ତିରତାକୁ ଯେ ଦେଖୁଛି, ଯେ ତା' ପକ୍ଷରେ ମନ୍ତବ୍ୟ ପ୍ରକାଶ କରୁଛି, ସେ ନିଶ୍ଚୟ ଏ ପ୍ରବାହରୁ ମୁକ୍ତ । କାଳ ନିରାଧାର ପରି ବହିଯାଏ । ତା' ସ୍ରୋତରେ ଭାସୁଥିବା ପର ତା'ର ଗତି ବିଷୟରେ ସଚେତନ ନୁହେଁ । ପୃଥିବୀର ଆହ୍ନିକ ଗତିକୁ ଆମେ ଅନୁଭବ କରି ପାରୁନା । ଅତଏବ ଯେଉଁଠାରୁ ଏ ସ୍ରୋତକୁ ଦେଖିହୁଏ, ସେଇଠି ଅତୀତ ଗଚ୍ଛିତ ରହୁଥିବ, ଏବଂ ଭବିଷ୍ୟତର ଆନୁମାନିକ ଆଭାସ ମଧ୍ୟ ମିଳୁଥିବ । ଏଣୁ ଚେତନାର ସେଇ ଚଉକା ଖଣ୍ଡ ହୁଏତ ସେତେ ଚଳମାନ ନୁହେଁ । ଆପେକ୍ଷିକ ଭାବରେ ହୁଏତ ତା'ର

Digitized by srujanika@gmail.com

ଗତି ଟିକଏ ଧୀମା; କିନ୍ତୁ ତାହା ସମ୍ପୂର୍ଣ୍ଣ ସ୍ଥିର ନୁହେଁ, ନିର୍ଦ୍ଦିଷ୍ଟ ନୁହେଁ । ପରମାଣୁଠାରୁ ନୀହାରିକା ମଣ୍ଡଳ ପର୍ଯ୍ୟନ୍ତ କେହି ସ୍ଥିର ନୁହନ୍ତି । ମଣିଷର ଜ୍ଞାନ, ମତାମତ, ଶାସ୍ତ୍ରବିଦ୍ୟା ସବୁ ଅସ୍ଥିର । ସଭ୍ୟତା, ସଂସ୍କୃତି, ବ୍ୟକ୍ତିଗୋଷ୍ଠୀ ସମାନ, ସମସ୍ତେ ଚଳନ୍ତା ମେଘଖଣ୍ଡ; କିନ୍ତୁ 'ଜୀବନ ନୁହଇ ସ୍ଥିର, ସ୍ଥିରଟି ମରଣ ।' କେଜାଣି ? ଟିକଏ ଭାବିଲେ ହୁଏତ ଜଣାଯାଏ ଯେ, କାହାକୁ ସ୍ଥିର ରଖେଇ ନ ଦେବାକୁ ଅହରହ ମୃତ୍ୟୁ ଆସି ଅଣ୍ଟା ଉପରେ ପାଉଁଶ ବୁଣିଦେଇଯାଏ । ଅନିର୍ଦ୍ଦିଷ୍ଟର ଗୋଟିଏ ହାତବାରିସି ମୃତ୍ୟୁ । ସେ ତାକୁ ପ୍ରତିପାଦିତ କରେ ମାତ୍ର । ଏଣୁ ସେ ନିଜେ ନିର୍ଦ୍ଦିଷ୍ଟ ନା ଅନିର୍ଦ୍ଦିଷ୍ଟ କହିବା ସହଜ ନୁହେଁ ।

ଯୁକ୍ତିଛଳରେ ବେଳେବେଳେ କୁହାଯାଏ ଯେ, ଯଦି ଏ ଅସଂଖ୍ୟ ବସ୍ତୁ, ବ୍ୟକ୍ତି, ଦେଶ, କାଳ ଆଦି ନଥାନ୍ତା—ଯଦି ସମଗ୍ର କାଳରୁ ସମୟର ଭେଉ ସବୁ ଲିଭିଯାନ୍ତେ, ବାକି ସବୁ ବସ୍ତୁ ମିଶି ଆକାଶ ସମେତ ଏକ ହୋଇ ଯାଆନ୍ତେ ଏବଂ ଶେଷରେ ଏ ଅନନ୍ତ କାଳ ଓ ଏ ଅନନ୍ତ ଆକାଶାଦି ମିଶି ପୁଣି ଏକ ହୋଇଯାନ୍ତେ, ବୋଧହୁଏ, ସେ ଚରମ ଏକକ ସତ୍ତ୍ୱରେ ଆଉ ଗତି ସମ୍ଭବ ହୁଅନ୍ତା ନାହିଁ । 'କିଏ', 'କଣ', 'କେବେ' ଆଦି ପ୍ରଶ୍ନ ସବୁ ଲିଭିଯାଆନ୍ତେ । ଏଣୁ ସେଇ ନିବୁଜ ଅନାମଧେୟ ବୋଧହୁଏ କେବଳ ନିଶ୍ଚିତ ସତ୍ୟ ହୋଇ ଅବିଚଳିତ ରହିଯାନ୍ତା ।

ବାଃ; ଚମତ୍କାର ! ଏଥିରୁ ଗୋଟାଏ ସମ୍ପୂର୍ଣ୍ଣ ଅଚଳନ୍ତି ଅକାମି ସମାପ୍ତିଟାକୁ ନେଇ କ'ଣ ଆମେ ଏ ବଜାରରେ ଚଳେଇପାରିବା ? ଆସନ୍ତୁ, ଆମର କିଛି ଚଳନ୍ତି ମୁଦ୍ରାର ଆପେକ୍ଷିକ ମୂଲ୍ୟରେ ସଂସାରରେ କାରବାର କରୁଥିବା, ଭେଉ ଗଣୁଥିବା, ଅଧେ ଜାଣି, ଅଧେ ନଜାଣି । ଆଉରି ଆଗେଇବାକୁ, ଆଉରି ଜାଣିବାକୁ ହାତ ବଢ଼େଇ ରହିଥିବା ଶୂନ୍ୟକୁ । ଏ ସୂର୍ଯ୍ୟ, ଏ ତାରକା, ଏ ବିଦ୍ୟୁତ୍ ଜଳୁଥିବା ପର୍ଯ୍ୟନ୍ତ ଆପାତତଃ ଆମ ବଣିଜ ତ ଚାଲିଥିବ । ମନ୍ଦ କ'ଣ ? ଏ କୁହୁଡ଼ିଟା ହୁଏତ ଆମର ଦୃଷ୍ଟିର ଧୂଆଁ । ଅଧିକ ଗୁଡ଼ାଏ ନିଠେଇ ଦେଖିବାରୁ ସବୁ ଜାଳିଜାଲୁଆ ଧରିଯାଇଛି । ତଥାପି ଆଉରି ନିଠେଇ ଦେଖିବାର ଅବକାଶ ତ ଦେଉଛି ! ଆଉ କିଛି ନ ହେଲେ ମଧ୍ୟ ଆମର ସୂର୍ଯ୍ୟଦୃଷ୍ଟି ନ ଆସିବା ପାଇଁ ଏ କୁହୁଡ଼ିଟା ତ ଅନ୍ତତଃ ସତଭଳି ଲାଗୁଛି । ମନ୍ଦ କ'ଣ ?

---

Digitized by srujanika@gmail.com

# ବଡ଼ମୁହାଁ

ଥରେ ହୁରିପଡ଼ିଗଲା ଯେ, ବାଲିଯାତ୍ରାରେ ଗୋଟାଏ ଜଲେବିର ଓଜନ କୋଡ଼ିଏ ସେର୍ ଏବଂ ଆକାର ଗୋଟିଏ ଶଗଡ଼ ଚକ ପରି। ତାକୁ ଗୃହିଁ ଗୋଟିଏ ଗଉଣିଭିକି ରସଗୋଲା ମଧ୍ୟ କୁଆଡ଼େ ଥୁଆହୋଇଥିଲା । ପୃଥିବୀର ଦୀର୍ଘତମ ଗୋଲ୍ ଓ ବୃହତ୍ତମ ଘଣ୍ଟା ଘୋଷି ମୁଖସ୍ଥ କରୁଥିବା ପିଲାଏ ଚଞ୍ଚଳ ହୋଇଉଠିଥିଲେ ଏ ଦୁଇଟିକୁ ସେ ତାଲିକାରେ ଅନ୍ତର୍ଭୁକ୍ତ କରିବାପାଇଁ । ଗୋଟାଏ ପଶ୍ଚିମା ବେପାରୀ କୁଆଡ଼େ କହୁଥିଲା ଯେ, ତା' ଗୋଟେଇଁବାପା କୁମ୍ଭମେଳାରେ ସେମିତି ଗୋଟାଏ କ'ଣ ଦେଖିଥିଲା, ଆଉ ସଂସାରରେ ଏମିତି କେଉଁଠି ନାହିଁ । ଯେଉଁଠି ଏ କଥାରେ ଟିକିଏ କାଣ୍ଟପୂତା ଡେଙ୍ଗଗଲା ସେଇଠି ଗୃଲିଲା ଲମ୍ବା ତାଲିକା, ଆମ ଦେଉଳ—ବଡ଼ଦେଉଳ, ଆମ ଦାଣ୍ଡ—ବଡ଼ଦାଣ୍ଡ, ଆମ ଠାକୁର—ବଡ଼ଠାକୁର, ଆମ ନଦୀ—ମହାନଦୀ, କିନ୍ତୁ ସମଝିଲାବାଲା ନିଭୃତରେ କଥା ହେବାର ଶୁଣାଯାଇଥିଲା—'କଓ, କାହିଁକି ଏତେ ସରକ ସାରି ସେଥିରୁ ଯୋଡ଼ାଏ ଅଟଳକ୍ତ ଶଜ ସେ ଦାମସାହୁ ତିଆରି କଲା ?—ତା' ମୁଣ୍ଡକୁ କ'ଣ ପିତ୍ତ ଝାଙ୍କିଲା କି ?'

ତା' ସତ ! ଏଭଳି ପିତ୍ତ ଝାଙ୍କେ, କେବଳ ଦାମସାହୁକୁ ନୁହେଁ—ପିରମିଡ୍-ବାଉଳା ମିଶର ସମ୍ରାଟଠାରୁ ହିଟ୍‌ଲର ପର୍ଯ୍ୟନ୍ତ ସମସ୍ତଙ୍କୁ ଝାଙ୍କେ । ବହୁ ଅର୍ଥ ବ୍ୟୟକରି ରଜାଙ୍କର ମୂଲ୍ୟବାନ୍ ମୃତଦେହଟିକୁ ସୁନା ସିନ୍ଦୁକ ଭିତରେ ପୂରେଇ ରଖିବାଠିରେ ଯୁକ୍ତି ଥାଇପାରେ; କିନ୍ତୁ ସେଇ ମମିଟି ରଖିବାକୁ ଗୋଟିଏ ପର୍ବତପରି ପିରମିଡ୍ ତୋଳିବା ସକାଶେ ରାଜ୍ୟର ସମସ୍ତ ରାଜସ୍ୱ ଖର୍ଚ୍ଚ କରିଦେବାର ତାତ୍ପର୍ଯ୍ୟ କ'ଣ ? କବରର ଦୈର୍ଘ୍ୟ ପ୍ରସ୍ଥକୁ ନେଇ ସମ୍ରାଟମାନେ କୁଆଡ଼େ ସାନ ବଡ଼ ହୋଇଯାଇଥିଲେ । ଏଇ ଭୟରେ ଏବଂ ଏଇ ଯୁକ୍ତିରେ କ'ଣ ସବୁ ପିରମିଡ୍ ତୋଳାହୋଇଥିଲା ? ଗୁଡ଼ିଆ ମଣିଷଟିଏ ହିଟ୍‌ଲର, ଗୋଟାଏ ହାତ କେମ୍ପା, ଆଖିକୁ ଦିଶେ ନାହିଁ; କିନ୍ତୁ ଗୋଟାଏ ଦୁର୍ଦ୍ଧର୍ଷ ସୈନ୍ୟବାହିନୀର ମାଲିକପଣିଆ ଜାହିର୍ କରିବାକୁ ସେ ଏସବୁ ଘୋଡ଼ାଇ ପକାଉଥିଲା । ଗୋଟାଏ ବିପୁଳ ଟେଙ୍କ୍‌ରେ ବସି ଯାତାୟାତ କରୁଥିଲା । ଗୋଟାଏ ଖେଳପଡ଼ିଆ ପରି ହଲ୍‌ରେ

Digitized by srujanika@gmail.com

ସାକ୍ଷାତ୍ ଦେଉଥିଲି । ଉଦ୍ଦେଶ୍ୟ ବୋଧହୁଏ ଏଭଳି ଘଟାଟୋପରେ କାହାକୁ ବିମୁଢ଼ କରିସାରିଲାପରେ କା'ର ମୁଣ୍ଡ ଉପରେ ପାଦଥୋଇଲେ ସେ କିଛି କହିବ ନାହିଁ—ଯଦି ଗୋଟାଏ ପାଦ ପୃଥିବୀ ବ୍ୟାପିଯାଏ ଏବଂ ଆଉପାଦ ସମଗ୍ର ଅନ୍ତରୀକ୍ଷକୁ ଘୋଟିଯାଏ, ତେବେ ତୃତୀୟ ପାଦଟି ସେଇ ବିସ୍ମୟବିମୂଢ଼ ମୁଣ୍ଡ ଉପରେ ରହିବ ନାହିଁ ତ' ଆଉ ରହିବ କେଉଁଠି ?

ପ୍ରାୟ ଏହି ମାତ୍ରରେ ରଜାବାହାଦୁରମାନେ ଭେଶିଚିତ୍ରୀ ବଢେଇ ଉଠୁଥିଲେ । ଛନ୍ତଶାଳଯୋଗରେ ବଢେ ହେଉଥିଲେ; ତା' ଭିତରୁ ଗୋଟାଏ ଆଲେକ୍‌ଜାଣ୍ଡାର ପାଇଁ ବାର ଗୋଟା ବାର୍‌ହା ଏକାଥରକେ ଭଜାଯାଇ ମଣୋହି ପାଇଁ ସଜ୍ଜିତ ହେଉଥିଲି ! ଗୋଟାଏ ଜନ୍ମଦିନରେ ସେଥିରୁ ଜଣେ ନୌବିହାର କରିବେ ବୋଲି ଦିଶମାଇଲ ଲମ୍ବ ମାର୍ବଲ ନହରରେ ଗୋଲାପଜଳ ପୂର୍ତ୍ତି କରାହେଉଥିଲି । ସେଭଳି ଯେକୌଣସି ମହାମହିମଙ୍କୁ ସେ ଆଡ଼ମ୍ବରର ଖୋଳ ଭିତରୁ ଖସେଇଆଣି ତାଙ୍କ ଦେହରୁ ସୁନା ଜରି ସବୁ କାଢ଼ି ପକାଇଲେ, ମୁଣ୍ଡ ଉପରୁ ପଥର ଏବଂ ସୁନାର ଓଜନିଆ ସେ ଟୋପିଟିକୁ ଖସେଇଦେଲେ ଏବଂ ପରିଶେଷରେ ଅଯଥା ଗୁଡ଼ାଏ ଲଟେଇଥିବା ସେ ନଖହେଲକ କ୍ଷୌର କରିଦେଲେ ସେ ହୋଇଯିବ ସେଇ ଚନ୍ଦାମୁଣ୍ଡିଆ, ଚିତଗାଆଖିଆ ସାଧାରଣ ଦାମସାହୁଟିଏ; ଯେ ଶଗଡ଼ଚକିଆ ଜଲେବି ଦେଖେଇ ଲୋକଙ୍କୁ ଅଭିଭୂତ କରୁଥିଲି—"ଗ୍ରେଟକୁ ଗ୍ରେଟକରି ଦେଖେଇବାରେ ଲାଜମାଡ଼େ; ଏଥିପାଇଁ ତା' ଭିତରୁ କେତେଜଣ ଦାମ୍ଭିକ ବେଲୁନ୍‌ରେ ପବନ ପୂରାନ୍ତି; କାୟା ବିସ୍ତାର କରନ୍ତି । ଦେହସାରା ତୋପ କମାଣ ଖଞ୍ଜି ନିଜକୁ ଫୁଲାନ୍ତି । ଶଙ୍କର ଭୟଙ୍କର ଦିଶନ୍ତି । ଅହରହ ଏ ଖଞ୍ଜାଖଞ୍ଜି ଭିତରେ ରହିବାକୁ ଆପ୍ରାଣ ଚେଷ୍ଟା କରୁଥାନ୍ତି । ନ ହେଲେ ବିରାଟ ଖୋଳର ପିରାମିଡ଼୍ ଖସିପଡ଼ିଲେ ଅସହାୟ କ୍ଷୁଦ୍ର ମମିଟି ଦିଶିଯିବ ଯେ । ସେ କାହାକୁ ସେ ସୁଯୋଗ ଦେବେନାହିଁ । ସ୍ପର୍ଦ୍ଧାରେ ସଂସାରକୁ ଚକିତ କରିଦେବେ । ସାତମହଲରୁ ଜମ୍ମା ଓହ୍ଲେଇବେ ନାହିଁ ।

ସବୁବେଳେ କିନ୍ତୁ ସ୍ପର୍ଦ୍ଧାରେ ଏଭଳି କାମ କରାଯାଏ ନାହିଁ । ହଜାରେ ବର୍ଷ ହୋଇଗଲି ହିମାଳୟ ଉପରେ ଗୋଟିଏ ବିରାଟ ପଥରର ଦୀପ ଭିତରେ ଏକାଥରକେ ଷାଠିଏ ମହଣ ଘିଅ ଢଳାଯାଏ ଏବଂ ସେଥିରେ ସେଇଭଳି ଗୋଟାଏ ବଳିତା ପକେଇ ଶିବ ଚତୁର୍ଦ୍ଦଶୀ ଦିନ ଗିରିରାଜ କୈଳାସର ଆରତି କରାଯାଏ । ଆଦିଶଙ୍କର ଏ ବ୍ୟବସ୍ଥା କରିବା ପୂର୍ବରୁ କେବଳ ହୁଏତ ଭାବିଥିବେ ଯେ ତୁଷାରମଣ୍ଡିତ ଭବ୍ୟସୁନ୍ଦର ଏ 'ଅଦ୍ରିବିଶାଳ'କୁ ସେଇଭଳି ଅର୍ଘ୍ୟ ନଦେଲେ

Digitized by srujanika@gmail.com

କ'ଣ ସୁନ୍ଦର ଦିଶିବ ? ଅନୁପାତ ବିରୋଧ ହୋଇଯିବ ନାହିଁ ? ଯଦି ଷାଠିଏ ମହଣ ଘିଅ ଧରୁଥିବା ମହାପାପ ପରିବର୍ତ୍ତେ ହିମାଳୟର ସେ ବିସ୍ତୀର୍ଣ୍ଣ ମାନ୍ୟତା ଭିତରେ ଗୋଟିଏ ପୁରୀ ଦେଉଳିଆ ସୁଉଚ୍ଚ ଆକାରରେ ଚଟକା ପାପାଳୀରେ ଠୋପେ ଶକ୍ତକଣ ଚଟେଇ ଦେଇ ଆରମ୍ଭ କରାଯାଏ, ତେବେ କ'ଣ ସୁନ୍ଦର ଦିଶିବ ? ଅନୁପାତସିଦ୍ଧ ନହେଲେ ଅଙ୍ଗହାନିପରି ସମ୍ପର୍କର ସୌଷ୍ଠବ୍ୟ ନଷ୍ଟ ହୋଇଯାଏ !

କିନ୍ତୁ ଏସବୁ ତାତ୍ତ୍ୱିକ ଯୁକ୍ତି କଥା ପଡ଼ନାହିଁ; ପଡ଼ିଛି ସେଇ ଡାମସାହୁ-ମାନଙ୍କ କଥା, ଯେଉଁମାନେ ସାନ ଦେଖିଲେ ଶଙ୍କନ୍ତି । ଅସୁନ୍ଦର ହେଲେ ମଧ୍ୟ ବଡ଼ ଜିନିଷଟିକୁ ଲୋଭକରନ୍ତି । ସେ ଭିତରୁ ଜଣେ ବଜାରରୁ ସବୁଠାରୁ ବଡ଼ ମୂଳାଟିକୁ ଘରକୁ କାଖେଇ ନେଇଯାଏ । ସେଥିରେ କଣ୍ଟୁରି ନଲଗୁ ବା ଭିତରପାକ ଫମ୍ପା ଥାଉ, ସେଥିରେ କିଛି ଯାଏ-ଆସେ ନାହିଁ । ଅଫିସ ଯାଉଥିବା ରାସ୍ତାରୁ ହୁଏତ ପେଣାଏ କଦଳି ଧରି ସେ ଘରକୁ ଧାଇଁବାର ଦେଖାଯାଏ । ଅଫିସ ଟିକିଏ ବିଳମ୍ବ ହେଉ ବରଂ ଗୋଟିକୁ ଯେପରେ ଓଜନର ଏ କଦଳୀ ପେଣାଟିକୁ ହାତଗୁଡ଼ କରିବାକୁ ହେବନାହିଁ । ସେଭଳି ଆମ୍ବ, ସେଇଭଳି ସବୁ । ତାଙ୍କ ଘର କଂସାଥାଳି-ଗୁଡ଼ିକର ବ୍ୟାସ ଦେଢ଼ହାତ, ଢାଳଗୁଡ଼ିକ କଳସ ପରି । ମୋଟା ବେପରୁଆ ଜମିଦାରିଆ ଲୋକଗୁଡ଼ିଏ ଏମାନେ । ବୋଧହୁଏ ଏ ସମସ୍ତଙ୍କର ବୃଷରାଶି । ବୋଧହୁଏ ଏମାନଙ୍କର ଗୋସେଇଁବାପାମାନେ ଏକଦା ଐଶ୍ୱର୍ଯ୍ୟଶାଳୀ ଥିଲେ । ଏଣୁ ବୋଧହୁଏ ଏମାନେ କଥା କହିଲେ ସୁଆଙ୍ଗର ରଜାପରି ଟାଣିହୋଇଯାନ୍ତି । ସେଇ ଠାଣିରେ ସେମିତି ବଡ଼ପାଟିରେ ବକ୍ତୃତା ଦିଅନ୍ତି । ଟିକିଏ ବାହାପିଆ, ଖଚୁଆ ନିଶ୍ଚୟ; କିନ୍ତୁ ସବୁକଥାରେ ବଡ଼ମୁହାଁ ଲୋକଗୁଡ଼ିଏ ।

ବଡ଼ମୁହାଁ ହେବା ଗୋଟିଏ ଖୋଇ, ଗୋଟାଏ ପ୍ରକାର ମନସ୍ତତ୍ତ୍ୱ—ଧରନ୍ତୁ ସେଥିରୁ ଜଣେ ତାଙ୍କ ନିଜ ଘରେ ସାନଝିଅ ପାଇଁ ଜାମା ସିଲେଇ କରୁଛନ୍ତି । ମାପ କୋଡ଼ିଏ ଇଞ୍ଚ ଲମ୍ବା । ତଳୁ ମୋଡ଼ାହେବାକୁ ଦୁଇ ଇଞ୍ଚ; କିନ୍ତୁ ତିନି ଇଞ୍ଚ ହାତରେ ଥିଲେ କ୍ଷତି କ'ଣ । କାନ୍ଧ ପାଖରେ ଯୋଡ଼ାହେବ ଅଧଇଞ୍ଚ ଲାଗିବା କଥା, ଗୋଟିଏ ଇଞ୍ଚ ଥାଉ । ଝିଅଟା ତ ପୁଣି ବଢ଼ିବ । ଏ ଜାମା ମଧ୍ୟ ଟିକିଏ ଛୋଟ ଦିଶୁଛି । ଏଣୁ ଚାରିଇଞ୍ଚ ରହୁ । କାଳେ ନଅଣ୍ଟ ପଡ଼ିଯାଇପାରେ, ଏଣୁ ହାତରେ ଦୁଇଇଞ୍ଚ ଥାଉ । ଏଭଳି ଯୁକ୍ତିରେ ଯେତେବେଳେ ଜାମା ଖଣ୍ଡି ତିଆରି ହୁଏ ସେ ହୋଇଯାଏ ଗୋଟିଏ ଉଦାର ପରିସରଯୁକ୍ତ 'ଆଲଖୋଲ' । ଝିଅର ସର୍ବାଙ୍ଗ ଆବୃତ । ଉପରେ କେବଳ ମୁହଁଟି ଅନିବାର୍ଯ୍ୟକାରଣବଶତଃ

Digitized by srujanika@gmail.com

ଖୋଲି ରହିବାକୁ ବାଧ । ସେ ଯଦି ଖାଉଥାନ୍ତି ସେହିଭଳି ଦୁଇଟେକିଜ ଗୁଡ଼ କିଅଧିକ ସିଝିଯାଏ । ତାଙ୍କ ହାତରେ ଲୁଣ ଟିକିଏ ବେଶି ପଡ଼େ; ତେଲ ଟିକିଏ ବେଶି ସରେ । ପରିବାଗୁଡ଼ାକ ବଡ଼ ବଡ଼ ଖଣ୍ଡରେ କାଟିହୋଇ ଯାଆନ୍ତି । ବାଢ଼ି ବସିଲେ ଥାଳିଆରେ କଲେ ତିଅଣ ନ ପଡ଼ିଲା ପର୍ଯ୍ୟନ୍ତ ତାଙ୍କ ଆଖିକୁ ଦିଶେନାହିଁ । ହାତେ ଉଞ୍ଚରେ ଘିଅବଡ଼ା ନହେଲେ ତାଙ୍କ ମନକୁ ପାଏନାହିଁ । ତାଙ୍କ ଆଖିଟା ବଡ଼ । ଦେଖେଇହେବା ଢଙ୍ଗ ତାଙ୍କର ହୁଏତ ନାହିଁ; କିନ୍ତୁ କାଳେ କେଉଁଠି ଗ୍ରେଟପଣ ଦିଶିଯିବ ଏବଂ ଗ୍ରେଟ ସହିତ ତାଙ୍କ ଷଣ୍ଢୁଘିଣି ପଡ଼ିବନାହିଁ ବୋଲି ସେ ଏମିତି ହୁଅନ୍ତି । ଲୋକେ ତାଙ୍କ ଆଚରଣରେ ଭୋଳ ହୋଇ ତାଙ୍କୁ ବେକୁବ୍ ନକହି, କହନ୍ତି ବଡ଼ମୁହାଁ । ଓଲ୍ଲୁ ନକହି କହନ୍ତି ଭେପା । ସେ ଅନୁଭବ କରନ୍ତି ଯେ, ସେ କୃତାର୍ଥ ହୋଇଗଲେ ।

ସେଭଳି ଓଲ-ଭଗିଆଙ୍କୁ ଅଳ୍ପକେ ଭଳେଇ ଦିଆଯାଇପାରେ । ଚକ୍କଣ ଶିଆଳମୁହାଁ ମଧ୍ୟ ଅନେକ ଆସି ଜୁଟିଯାଆନ୍ତି ଗୁଣ୍ଟୁବାକ୍ୟରେ ତା'ର ସର୍ବସ୍ୱ ଲୁଟି ନେବାକୁ । ସେ ଖବର ଜାଣିପାରେନାହିଁ । ଗୋଟାଏ କୌଣସି ପାରଂପରିକ ଉଦାରପଣ, ଗୋଟାଏ ପ୍ରଚ୍ଛନ୍ନ ମହତ୍ତ୍ୱକୁ ଧୋଡ଼େଇବାକୁ ସେ ଜାଣିଶୁଣି ଧରାଦିଏ । ଗୃହକରିଆ ହେଲେ ପୁଷ୍ଟା ମାସ ମଝିରେ ଗୋଟାଏ ଭୋଜି ଦେବାକୁ ରାଜି ହୋଇଯାଏ । ପାଞ୍ଚଜଣଙ୍କ ପାଇଁ ଆରମ୍ଭକରି ପଚିଶଙ୍କୁ ଖୁଆଇବାକୁ ବାଧ ହୁଏ । ସମସ୍ତେ ଉତ୍ସବ ଶେଷରେ ତା' ପିଠି ଥାପୁଡ଼ାଇ ପାନ ଚୋବେଇ ଚାଲିଯାଆନ୍ତି । ସେ କ୍ଳାନ୍ତ ହୋଇ ବୋଧହୁଏ ନଖାଇ ଶୋଇଯାଏ । ମନକୁ ମନ କହେ "ବେକୁବ୍, ଓଲ୍ଲୁ, ଏମିତି ସେମାନେ ତୋ'ଠୁ ବେଶି ସିଆଣିଆ ? ତୁ'ଟା ଏମିତି କଦମ୍ବା ଭକୁଆ ? ଏବେ କିଏ ପିଠିରେ ପଡ଼ିବ ? ଉଧାର ଖାତାରେ ଅଧିକ ଶହେ ଆଠଟଙ୍କା କିଏ ଦେବ ? ତତେ ତ କିଏ ଘାସ ପୁଳାଏ ଦିଅନ୍ତି ନାହିଁ । ସେମାନେ ଭେଳେ ଭେଳେ କହି ଚହିଁକେଇଦେଲେ ତୁ କାହିଁକି ସବୁଥର ଏମିତି ଆଣ୍ଠୁ ପତେଇ ଫୁଫୁକାର କରି ମାଟି ଖୁଦିବେଉଚୁ ? ଏମିତି ଗୁଡ଼ାଏ ହାଲିଆ ହେବାର ଅର୍ଥ କ'ଣ ! କ'ଣ ନା' ସେଥିରୁ କିଏ ଗୋଟାଏ ତୋତେ ଆଗରୁ ବଧକେଇ ଦେଇଚି ଯେ ତୋ'ର ଷଣ୍ଢୁଘିଣି, ଏମିତି ନହେଲେ ନ ଚଳେ ?"—ଅନେକ ଚୁ-ଚୁ ଅବଶୋଷ ଭିତରେ କିଛିକାଳ କଟିଗଲେ ପୁଣି ବଡ଼ମୁହାଁ ମୁରୁକିମାରି କହେ "ହେ ମାରି ଗୋଲି, କ'ଣ ହୋଇଗଲା ଏବେ ! ମୋ ବାପ ଆଲେକ୍‌ଜାଣ୍ଡାର, ମୋ ଗୋସେଇଁବାପ ଅଶୋକ, ମୁଁ ଦାମସାହୁ ! ମୁଁ ଶଗଡ଼ଚକିଆ ଜଲେବି କରିବି ନାହିଁ ତ କ'ଣ ସେ ବାରବୁଲା ଚୁଲିମୁଣିଆ ଧଡ଼ିଆପାକ କରିବେ ? ତାଙ୍କୁ

Digitized by srujanika@gmail.com

ଜାନ ମୋଡ଼ ପଶୁଛିବଟି, ତାଙ୍କ ସତେଇଶି ପୁରୁଷରେ କାହାର ବୃଷବଣି ଅଛୁ ପର ! ହୁଁଃ !"

ଏ ଉଦାର ଲୋକଟି ହିସାବୀ ନୁହେଁ । ଗଣିତରେ ସଦା ଦୁର୍ବଳ । ଏ ସାରଳାଦାସ ସ୍ୱାଭାବିକ ଢଙ୍ଗରେ ଅତିଶୟୋକ୍ତି କରି ଗୁଲେ । ତା' ହାତ ଛଅଗୁଣ ହେଲେ ତା' ବେକରେ ଓହଳଥିବା ଘଣ୍ଟା ବାରଗୁଣ । ମାପି ଯୋଖି ଖାପିବା ତା' ଧାତୁରେ ଚଳେନାହିଁ । ସେ ତା'ର ସାମୁଦ୍ରିକ ଉଦାରପଣରେ ଶ୍ରେଷ୍ଠ ଭଙ୍ଗାରୁଜା ନିୟମ ବେନିୟମ୍ ସବୁକୁ ଗୋଟିଏ ଖାମଖାୟ ଜୁଆରରେ ମଡ଼େଇଦିଏ । ତା' ସୈନ୍ୟ ଗଣନାରେ ହାତୀ ଅବଶ୍ୟ ଏକ 'ଖର୍ବ' ରହିବେ । ପଦାତିକ ରହିବେ 'ପଦ୍ମ' । ଖର୍ବ କହିଲେ ଯେ ଏକରେ ଦଶଟି ଶୂନ ଲଗେ ଏବଂ ପଦ୍ମ କହିଲେ ଯେ ଏକ୍‌ରେ ଅନ୍ୟୂନ ଚଉଦଟି ଶୂନ—ସେ କଥାକୁ ତା'ର ଖିଆଲ୍ ନ ଥାଏ । ତା'ଠୁ ଊଣା ହେଲେ ପର ତାକୁ ହଣେନାହିଁ ! ସେଇଭଳି ତା'କୁ ହଣେନାହିଁ ଯଦି ସମୁଦ୍ର ମୁହାଁ ବସ୍ତାଟି ତା'ର ଅଣଓସାରିଆ ହୋଇଯାଏ ବା ମୁଣ୍ଡିଆ ଉପରେ ତା' ଗଡ଼ା ଦେଉଳଟି ଗୋଟିଏ ଖଣ୍ଡିଆ ପର୍ବତରୁ ଊଣା ହଣିଯାଏ । ତା'ର ବଡ଼ଦାଣ୍ଡିଆ ମନ । ସେ ଭୋଗକଲେ ଥରକେ ଷାଠିଏ ପୌଟି ଚେକନେଇ ଥୋଇଦିଏ । ଠାକୁରଙ୍କୁ ଥୁଏ ଶହେ ଉଞ୍ଚ ସିଂହାସନରେ । ତା ଠାକୁର ମଧ ତା ମନଲାଗି ବଡ଼ମୁହାଁ, ବଡ଼ଆଖିଆ, ବଳଆରଭୂଜ । ତା' ବେଶପାଇଁ ମହଣ ମହଣ ସୁନା ଆଣି ଥୋଇଦିଏ । ମାଲ ଖଞ୍ଜିବାକୁ ସାତକୋଟି ଟଙ୍କାର ହୀରଗୋଟାଏ ଗୁହେ ।

ଗୋଟାଏ ଜାତି ଏଭଳି ବଡ଼ମୁହାଁ ହୋଇଯାଇପାରେ । ଏମିତି ସାମୁଦ୍ରିକ ବଡ଼ପଣରେ ଧୂ-ଧୂ ଗର୍ଜିପାରେ—ଏଇଟା ଗୋଟାଏ ଅଭିଜାତ ପରଂପରା; ଦୁଃସାହସିକ କଳିଙ୍ଗର ପରଂପରା । ଏଠି ଈଶ୍ୱରଙ୍କ ଭାବକୁ ଐଶ୍ୱର୍ଯ୍ୟରେ ରୂପାୟିତ କରିହୁଏ । ଉପରୁ ଉପରକୁ, ବୃହତ୍‌ରୁ ବୃହତ୍ତରକୁ ଏହାର ଊର୍ଦ୍ଧ୍ୱଗତି । ମହତୋ ମହୀୟାନ୍ ଏହାର ଲକ୍ଷ୍ୟ—ଭୋପା ବଡ଼ମୁହାଁ ଦାମସାହୁ ଭଳି ଏ ଜାତି । ବାଲିପାଣିରେ ଏମାନେ ଶଗଡ଼ଚକ ପରି ଜଳେଇ ଅବଶ୍ୟ ଥୋଇବେ । ସେଥିରେ ସରକ ସରିଯାଉ, ଦାମିଆ ଉଚ୍ଛନ୍ନ ହୋଇଯାଉ, ଧାର ଖାତାରେ ଶହେ ଆଠଟଙ୍କା ଅଧିକ ଚଢ଼ିଯାଉ, ସେଥିରେ କିଛି ଯାଏ-ଆସେ ନାହିଁ । ଏ ଜାତିଟାର ବୃଷବଣି । ଏବେ ନୁହେଁ; ମହାଭାରତ ଅମଳରୁ, ତେପନ ପୁରୁଷରୁ ଏହାର ବଣି ବୃଷ ।

Digitized by srujanika@gmail.com

# କଣ୍ଟା ଓ ବେଦନାବୋଧ

ଜାଣିଶୁଣି କେହି କେବେ ସପ୍ତଫେଣିଆ କଣ୍ଟା ଉପରେ ଗୋଡ଼ ମଡ଼େଇଦେବାର ଶୁଣାନାହିଁ । କିନ୍ତୁ ଅସାବଧାନ ଥିଲାବେଳେ ବଡ଼ ଅତର୍କିତ ଭାବରେ ହୁଏତ ହଠାତ୍ କଣ୍ଟାଟାଏ ପାଦରେ ବୁଡ଼ିଯାଏ ଏବଂ ବୁଡ଼ି ବୁଡ଼ି ଭାଙ୍ଗିଯାଏ । କିଛି ସମୟପାଇଁ ହୁଏତ କଟ୍ କଟ୍ ହୋଇ ବିନ୍ଧେ । ତା'ପରେ ବେଶ୍ ଲମ୍ବି ଲମ୍ବି ପାଦଟି ବାଗ ଅବାଗରେ ପଡ଼ିଗଲେ ଆସ୍ତେ ରକ୍ କରି ଲାଗିଯାଏ; ନ ହେଲେ ସେ ସେମିତି ଥାଏ । ଆଖିକୁ ଦିଶେ ନାହିଁ, ଚିପି ଚିପି ଦରାଣ୍ଡିଲେ ଜଣାପଡ଼େ । ସେମିତି ଟିପ ମାରି ରକ୍ ରକ୍ କରିବାକୁ ପ୍ରକୃତରେ ସମସ୍ତଙ୍କୁ ସୁଖ ଲାଗେ; କିନ୍ତୁ କୌଣସି କାରଣରୁ ତାକୁ ସୁଖ କହିବା ଆମର ଅଭ୍ୟାସ ହୋଇନାହିଁ ।

ତଥାପି ମାନିବାକୁ ହେବ ଯେ ଜୀବନର ଅନେକ ଉପଭୋଗ୍ୟ ମୁହୂର୍ତ୍ତ ଭିତରୁ ଗୋଟିଏ ହେଲା କଣ୍ଟା କଢ଼େଇବା ସମୟର ଅପୂର୍ବ ବିଳାସ । ନିଜେ ନିଇଁପଡ଼ି ଖୋଳିଦେଲେ ସେଥିରେ ଆନନ୍ଦର ମାତ୍ରା ଅନେକ କମ୍; ନଚେତ୍ କଣ୍ଟା କାଢ଼ିବା ବେଶ୍ ଗୋଟାଏ ଚମତ୍କାର ଉତ୍ସବ । ପ୍ରଥମେ ଖୁବ୍ ଗୋଟାଏ ବାଦଶାହୀ ଢଙ୍ଗରେ ଗୋଡ଼ ଲମ୍ବେଇ ନରମ ଗଦିକୁ ଆଉଜି ବସାଯାଏ । ଅନେକେ ସେତେବେଳେ ଶୋଇପିବାକୁ ମଧ୍ୟ ପସନ୍ଦ କରନ୍ତି । ଆଉ କେହି କେହି ହୁଏତ ଆରାମଚୌକିରେ ବିଛେଇ ହୋଇ ବସିଯାଆନ୍ତି । ମୂଳ ଉଦ୍ଦେଶ୍ୟ ହେଲା ସେପରି ଅବସ୍ଥାରେ ଆଖିବୁଜି ଜନିଷଟାର ପୂରା ସ୍ୱାଦ ନେଇ ହେବ ନା ନାହିଁ, ଏଥିପାଇଁ ବିଶେଷ ନୀତି-ନିୟମ କିଛି ନାହିଁ । ଯେ ଯେମିତି ଭଲରେ ସଜ ହୋଇ ବସିଗଲା । ଶରୀରଟିରେ ଚମତ୍କାର ଗୋଟିଏ ସମର୍ପଣର ମୁଦ୍ରା; ଭିତରେ କିନ୍ତୁ ଚେତନା ଖୁବ୍ ତୀବ୍ର ଓ ଶାଣିତ । ପବନ ବାଜିଲେ ଗୁଇଁ ଗୁଇଁ କରୁଥାଏ ଚେତନା ।

ସେଇଠୁ ଆସନ୍ତି କଣ୍ଟା-କଢ଼ାଳି । ତାଙ୍କ ପାଖରେ ଆଉ ଗୋଟାଏ କଣ୍ଟା । ହୁଏତ ଭାରି ପିନ୍‌ପିନିଆ ମୁନିଆ ଛୁଞ୍ଚିଟିଏ । ତାଙ୍କ ମୁଖାରବିନ୍ଦ ପ୍ରାୟ ସସ୍ମିତ । ସ୍ୱର୍ଗର କୌଣସି ସନ୍ତୁଷ୍ଟ ଦେବପୁରୁଷ ଆସି ବର ଯାଚିବାର ଭଙ୍ଗୀରେ ସେ

Digitized by srujanika@gmail.com

ପଗ୍ଭରନ୍ତି,—'କେଉଁଠି କଣ୍ଟା ବୁଡ଼ିଛି ଦେଖି !' ସେତିକିବେଳୁ 'ସୁ', 'ସା', 'ଆହା', 'ଇସ୍' କରି ସାକୁଲେଇ ହେବାକୁ କଣ୍ଟାଧାରୀ ପ୍ରସ୍ତୁତ ହୋଇଯାଆନ୍ତି । ଅନେକ କଷ୍ଟର ଭାବ କରି ସତେ ବା ନିଜ ଅନିଚ୍ଛାରେ ସେ ପାଦ ହଲାଇ ଇଙ୍ଗିତ କରନ୍ତି; କିନ୍ତୁ, ଅଲକ୍ଷ୍ୟରେ ଗୋଟିଏ ସ୍ନିଗ୍ଧ ବେଦନାର ଆଶାରେ ସେ ଉତ୍କଣ୍ଠିତ ଥାଆନ୍ତି ।

ଯାହାପରେ ସାଧାରଣତଃ ଯେଉଁମାନେ ଖୁବ୍ ସମଝଦାର, ସେମାନେ ଆଖି ବୁଜି ଦିଅନ୍ତି । ସବୁ ତେଣିକି କେବଳ ସ୍ପର୍ଶର ଅନୁଭବ । ପ୍ରଥମ ଗୋଟିଏ ନରମ ଏବଂ ଉଷୁମ ହାତ ପାପୁଲି ସେ ସମଗ୍ର ରାଜ୍ୟକୁ ଆଉଁସି ଚାଲିଯାଏ; ତାକୁ ଉଲ୍ଲସିତ କରି ଦେଇଯାଏ । ସମଗ୍ର ଶରୀରର ଲକ୍ଷେ କେନ୍ଦ୍ରରେ ସେଇ ଗୋଟିଏ ପୁଲକ କଣ୍ଟକିତ ହୋଇଉଠେ । ଶରୀରର ଲୋମ ଲୋମ ସତେ ବା ସେହି ଗୋଟିଏ ମାତ୍ର କଣ୍ଟା ଶାଖା ମେଲିଯାଏ ! ତା'ପରେ ଟିପଟିଏ କେବଳ ଖୋଜିବୁଲେ ସେଇ ମୃଦୁ ଯନ୍ତ୍ରଣାର ବିନ୍ଦୁଟିକୁ । ମଝିରେ ମଝିରେ ମାଖନା ଟିପରେ ପାଦକୁ ଚିପି ଚିପି କଣ୍ଟାକଢ଼ାଳି ପଗ୍ଭରନ୍ତି, 'କ'ଣ ଏଇଠା ?' ଉତ୍ତର ଆସେ 'ଉଁହୁଁ' । ଆଉ ଟିକିଏ ବାଁକୁ ବା ତଳକୁ । ଯଦି ଦୁର୍ଭାଗ୍ୟକୁ କଣ୍ଟାଟା ଗୋଇଠିର ମୋଟା ଗୋଦରା ଚମରେ ବୁଡ଼ିଥାଏ ଏ ପର୍ଯ୍ୟାୟଟା ସେତେ ଉପଭୋଗ୍ୟ ହୋଇପାରେ ନାହିଁ, କିନ୍ତୁ ଯଦି ପାନିଆଁରେ ମଝିଆଡ଼କୁ ବୁଡ଼ିଯାଇଛି—'ଓଃ ଜଗତରେ ସମସ୍ତଙ୍କର ସେଇଠି ହିଁ କଣ୍ଟା ବୁଡ଼ୁ'—ତେବେ ପ୍ରତିଟି ସ୍ପର୍ଶର ମୁହୂର୍ତ୍ତ ଗୋଟାଏ ଲେଖାଁ ଅନବଦ୍ୟ ମୋଗଲାଇ ବିଳାସ ! ଟିପ ଆସ୍ତେ ପାଖେଇଆସେ···ହାଁ ହାଁ, ନାଁ ନାଁ ଭିତରେ ହଠାତ୍ ବଜୁଳିଟାଏ ମାରିଯାଏ । ଟିପଟି ଚମକି ଉଠିଯାଏ । ପାଦଟି ଚମକି ଘୁଞ୍ଚିଯାଏ । କିନ୍ତୁ ଅବିଳମ୍ବେ ଟିପ ଯାଇ ପୁଣି ନିର୍ଭୁଲ ଥାନ ଉପରେ ମଡ଼େଇ ରହେ—ଉତ୍କଣ୍ଠା ବଢ଼ି ଚାଲେ । ମୃଦୁ ଯନ୍ତ୍ରଣାଟିକିକ ପାଇଁ ଆଗ୍ରହର ଉତ୍ତାଣି ଉଷ୍ଣ ଉଷ୍ଣ ତେଜ ତୋଳେ । କଣ୍ଟା-କଢ଼ାଳି ଟିପ ମଡ଼େଇ ରକ୍ ରକ୍ କରିଦିଅନ୍ତି—'ଉହୁ' 'ଉହୁ' ହୋଇ ପାଦ ଘୁଞ୍ଚିଗଲେ ପରିହାସରେ ପଗ୍ଭରନ୍ତି "କ'ଣ ଏଇଠା ତ !" ଭାରି ପରିଷ୍କାର ନିଷ୍କମ୍ପ ନିର୍ଭୁଲ ଭାବରେ ଉତ୍ତର ଆସେ "ହଁ ହଁ ସେଇ !"—

ଟିକିଏ ହଳଦି ପାଣି ନେଇ ଧୋଇଦେଲେ କୁଆଡ଼େ କଣ୍ଟାଟା ବେଶ୍ ପରିଷ୍କାର ବିନ୍ଦୁଟିଏ ପରି ଦିଶେ । କଞ୍ଚା ମାଉଁସଟାକୁ ଖଣ୍ଡିଆ କଲାବେଳେ ଟିକିଏ ହଳଦିର ପ୍ରଲେପ ଲଗିଥିବା ମଧ୍ୟ ଶାସ୍ତ୍ରସମ୍ମତ । ଏଣୁ ଆସ୍ତେ ପାଣି ଟିକିଏ ଲେପିଦେଇ

Digitized by srujanika@gmail.com

ପୋଛୁଥାଆନ୍ତି । କଣ୍ଟାକଢ଼ାଳ ସଜାଡ଼ି ହୋଇ ବସିଯାଆନ୍ତି । ଆଖିଯୋଡ଼ିକ ତାଙ୍କର ତୀକ୍ଷ୍ଣ; ମୁହଁରେ ଗୋଟିଏ ଜରୁରୀ ପରିସ୍ଥିତି । ଛୁଞ୍ଚି ଯେତେ ବାଗେ ଚାଲେ ସେମିତି ବିଶୁଦ୍ଧ ଜାତିର କଣ୍ଟା-କଢ଼ାଳ ହୋଇଥିଲେ ତାଙ୍କ ମୁହଁ ମଧ୍ୟ ସେତିକି ବାଗରେ ମୋଡ଼ି ହେବାକଥା । ସେଇଥିରୁ ସେମାନଙ୍କୁ ଅଧମ ବା ଉତ୍ତମ ପର୍ଯ୍ୟାୟରେ ଅନ୍ତର୍ଭୁକ୍ତ କରାଯାଇପାରେ । କଣ୍ଟାଧାରୀଙ୍କର ଏଇଠାରୁ ଆରମ୍ଭ ହୁଏ ପ୍ରକୃତ ଆନନ୍ଦ । ଛୁଞ୍ଚି ଯାଇ କଣ୍ଟାର ଆଖପାଖ ଅଞ୍ଚଳରେ ଫୋଡ଼ି ଦେଲେ ପାଣିଚିଆ ଧରିଯାଉଥିବା ପାଟିଟାକୁ ସେ ଖୁବ୍ ସୁଆଦ କରି ପବନ ଶୋଷୁଥାନ୍ତି । ମାତ୍ର କଣ୍ଟାରେ ଠକ୍‌କିନା ବାଜିଗଲେ ଜୋର୍‌ରେ ଭିଡ଼ି ନିଅନ୍ତି ପବନ ଓ ଆସ୍ତେ ଚମକେଇ ଦିଅନ୍ତି ପାଦଟାକୁ । ଉତ୍ତମ କଣ୍ଟାକଢ଼ାଳ ମଧ୍ୟ ପାଟିସୁଆଦ କରୁଥାନ୍ତି । ଯନ୍ତ୍ରଣାର ଆନନ୍ଦ ସେ ସମୟରେ କିଏ ଅନୁଭବ କରୁଥାଏ, କହିବା କଠିନ । ପାଦ ଚମକି ଘୁଞ୍ଚିଗଲେ ଏବଂ 'ଉହୁ ଉହୁ' ଶବ୍ଦ ହେଲେ କଣ୍ଟାକଢ଼ାଳ ମୃଦୁ ଭର୍ତ୍ସନା ଦେଇ କହନ୍ତି, "ଏମିତି ହଲେଇଲେ—ତେବେ ଥାଉ !" ପାଦଟି ମନକୁ ପୁଣି ଲମ୍ବି ଆସି ଛୁଞ୍ଚିକୁ ଅପେକ୍ଷା କରେ । କଣ୍ଟାଧାରୀଙ୍କର ସମସ୍ତ ଚେତନା ସେଇ ଗୋଟିଏ ବିନ୍ଦୁରେ ପୁଞ୍ଜୀଭୂତ ଏବଂ କଣ୍ଟାକଢ଼ାଳଙ୍କର ସମଗ୍ର ଏକାଗ୍ର ଧ୍ୟାନ ସେଇ ଛୁଞ୍ଚିମୁନରେ । କିଛି ସମୟ ଏପରି ମାଂସ ଆଡ଼େଇଲା ପରେ ଆରମ୍ଭ ହୁଏ ଚରମ ପର୍ଯ୍ୟାୟ ।

ଛୁଞ୍ଚି ମୁନରେ କେବଳ କଣ୍ଟାଟିକୁ ଏପାଖ ସେପାଖ ଦୋହଲାଇ ହୁଗୁଳିବା ହେଲା କାମ । ଦାନ୍ତ ଜାକି 'ଉହୁ' 'ଉହୁ'ରେ କମ୍ପିତ ଶରୀରଟିକୁ ସଂଯତ କରି କଣ୍ଟାଧାରୀ ପଡ଼ିରହନ୍ତି । ପ୍ରତିଟି ଆଘାତରେ ତଳପାଠାରୁ ତାଳୁକାଯାଏଁ ବିଜୁଳି ମାରିଯାଏ । କିନ୍ତୁ ଏଣେ ଖୁବ୍ ଭିତରେ ଇଚ୍ଛା ହେଉଥାଏ—ଏ ଅସମ୍ଭବ ପର୍ଯ୍ୟାୟ ଚାଲିଥାନ୍ତା କି । କିନ୍ତୁ ତାହା ଚାଲେନାହିଁ, କଣ୍ଟାକଢ଼ାଳ ସ୍ୱାଭାବିକ ଭାବରେ ହାଲୁକା ହୋଇଯାନ୍ତି । ଏକାଗ୍ରତାରେ ଯାହା ଧନୁପରି ତାଙ୍କ ଦେହ ଟାଣି ହୋଇ ରହିଥିଲା ସ୍ନାୟୁ, ମାଂସପେଶୀ ସବୁ ଢିଲା ହୋଇଯିବାରୁ ସେ ଅଧାନିଶ୍ୱାସଗୁଡ଼ାକୁ ପୂରା କରି ଲମ୍ବା ଲମ୍ବା ଛାଡ଼ନ୍ତି । କହନ୍ତି—'ଓହୋ—କେଡ଼େ ମୂର୍ତ୍ତି ସେଇଟା ହେଇଚି ଦେଖିଲଣି ?' ସେହିଭଳି ଓହୋ କହୁଉଠନ୍ତି କଣ୍ଟାଧାରୀ, ଆଖି ପ୍ରଥମେ ଫିଟେଇ ସେ ଚାହାଁନ୍ତି । ସନ୍ଦେହରେ ଆଙ୍ଗୁଠିଟିଏ ଯାଇ ପାଦ ପାନିଆଁରେ ଦଉଡ଼ୁଥାଏ, 'ସତେ କ'ଣ ସେଟା ବାହାରିଗଲା'—ବନ୍ଧୁ ପ୍ରଶ୍ନରେ କଣ୍ଟାଟିକୁ ଗୋଟେଇ ତାଙ୍କ ହାତ ପାପୁଲିରେ ଥୋଇଦେଲେ ସଂଶୟ ଚାଲିଯାଏ । ଆଖିପତାର ବାଳଟିରେ

Digitized by srujanika@gmail.com

ଟେକିଲେ ଯଦି ସେ ଲିଖିଗଲା ତେବେ ସେଇଟା ଗୃହର । ଯଦି ଉଆଁ ମାରି ଭୁଲିଗଲା ତେବେ ବାଘ । ଅଶ୍ରୁସ୍ରୁତି ଓ ଚରମତୃପ୍ତିର ନିଶ୍ୱାସଟିଏ ନେଇଁ ମାରି ଉଭୟେ ଉଠିପଡ଼ନ୍ତି । ପାଦତଳପାଟିର ସ୍ନେହ-ସୋହାଗର ଅବସର ସରିଯାଏ । ଯାହା ଆଦର ସେ ପାଇଥାଏ, ତାକୁ ମନେପକାଇ ତଳମୁହାଁ ପୁଣି ଧୂଳିମଳି ଗୋଡ଼ମାଟିରେ ଘୋଷାରି ହେବାକୁ ସେ ସଜ ହୋଇଯାଏ । ହଠାତ୍ ହୁଏତ ନୁହେଁ; କିନ୍ତୁ ମଝିରେ ମଝିରେ ତା'ର ଅବଶ୍ୟ ଇଚ୍ଛା ହୁଏ କଣ୍ଟା ଆଉଥରେ ବୁଢ଼ିଲା କି ।

---

Digitized by srujanika@gmail.com

# ଉଦ୍‌ବର୍ତ୍ତନ

ଶୁଣିଛି ଯେ ସାତ୍ତ୍ୱିକରେ ଥାଇ ବହୁ ଯୋଗୀଜନ ଏ ସଂସାରର ବହୁଳ ଦ୍ୱନ୍ଦ୍ୱ ସବୁ କାଟି କୌଣସି ଏକକ ସତ୍ତ୍ୱରେ ପହଞ୍ଚିବା ପାଇଁ ତପସ୍ୟା କରନ୍ତି । ମୁଁ କିନ୍ତୁ ତା' କରିପାରେ ନାହିଁ । ମୋ ସ୍ୱଭାବ ଆସୁରୀ । ସେଇମାନେ କହନ୍ତି ମୁଁ କୁଆଡ଼େ ତାମସିକ । ମୁଁ କିନ୍ତୁ ଏ ଦ୍ୱନ୍ଦ୍ୱଟାକୁ ଖୁବ୍ ବୁଝେ । ମୋତେ ସେ ଅତିଷ୍ଠ କରେ । ମୋର ବିପକ୍ଷୀତ ମୋତେ ରଖେଇ ଦିଏନାହିଁ । ସେ କେଉଁଠି ଥାଏ, କିପରି ଥାଏ, କାହିଁକି ବା ମୋତେ ଏପରି ବ୍ୟସ୍ତ ଚଞ୍ଚଳ କରେ, ମୁଁ ବୁଝିପାରେ ନାହିଁ । ମୁଁ ବୁଝେ ଯେ ତା'ର ବିନାଶ ନ ହେଲେ ମୁଁ ବଞ୍ଚିପାରିବ ନାହିଁ । ଏଣୁ ମୁଁ ମୋ ସ୍ୱଭାବରେ ତା'ର ବିରୋଧ କରେ ।

ଆଦିଯୁଗର କଥା । ମୁଁ ହିରଣ୍ୟାକ୍ଷ ହୋଇ ତାକୁ ଘୋର ଅନ୍ଧକାର ଭିତରେ ଖୋଜୁଛି; ତାକୁ କୌଣସି ପ୍ରକାରେ ଖୋଜି ସଂହାର କରିବାକୁ ମୋର ଦୁର୍ବାର ସଂକଳ୍ପ । ନିଜ ଉପରେ ଅପରିମେୟ ଆସ୍ଥା । ସେ ଯେ ଅବଶ୍ୟ ମରିବ, ଏଥିରେ ମଧ୍ୟ ପ୍ରଗାଢ଼ ବିଶ୍ୱାସ । ସେ ସେଇ ଅନ୍ଧକାର ଭିତରୁ ମୋତେ ଆସି ପ୍ରବଳ ଭାବରେ ଆକର୍ଷିବା ମୁଁ ଅନୁଭବ କରୁଛି । ଘୋରଯୁଦ୍ଧରେ ମୁଁ ତାକୁ ପରାସ୍ତ କରିପାରିନାହିଁ । ମୁଁ ତା'ର ଶୂକର ଦନ୍ତ ପାଇଁ ପ୍ରସ୍ତୁତ ନ ଥିଲି । ଅଦ୍ୟାବଧି ମୁଁ କେବେହେଲେ ତା'ପାଇଁ ପ୍ରସ୍ତୁତ ହୋଇପାରି ନାହିଁ । ସେ ସେଇ ଶାଣିତ ଦନ୍ତରେ ମୋତେ ବିଦାରଣ କଲା; ମୋ ଭାଇକୁ ମଧ୍ୟ ବିଦାରଣ କଲା ନଖରେ । ଆମେ ହାରିଛୁ ସତ; କିନ୍ତୁ ଆମ ପାଇଁ ସେ ନଖ ଦନ୍ତରେ ପ୍ରକଟିତ ହେବାକୁ ବାଧ୍ୟ ହୋଇଥିଲା । ଆମେ ହିଁ ବାଧ୍ୟ କରିଥିଲୁ, ସେ ତା'ର ନିଜ ପ୍ରୟାସରେ ଆମକୁ ସଂହାର କରିବାକୁ ।

ତା' ପରେ ଆମେ ଚୂର୍ଣ୍ଣ ହୋଇଯାଇଛୁ ଅଗ୍ନିକଣା ପରି; ସେ ଚୂର୍ଣ୍ଣ ହୋଇଯାଇଛି ବର୍ଷାବିନ୍ଦୁ ପରି । ଆମେ ଜାଳି ପାରିନାହୁଁ, ସେ ବି ଲିଭେଇ ପାରି ନାହିଁ । ଆମେ ମୋଟଉପରେ ଜମାଟ ବାନ୍ଧି ନାହୁଁ । ଗୋଟିଏ ଯୁଗ ବିତିଯାଇଛି !

Digitized by srujanika@gmail.com

ନୂତନ ଯୁଗରେ ମୁଁ ପୁଣି ସେଇ ଅସୁର । କିନ୍ତୁ ମୁଁ ବ୍ରାହ୍ମଣ, ବିଶ୍ରବା ମୋର ଜନକ ! ମୁଁ ତାକୁ ଜାଣିଶୁଣି ବିରୋଧ କରୁଛି । ସେ ମୋତେ ସଂହାର କରିବ— ଏକଥା ମୁଁ ଜାଣେ, ତଥାପି ତାକୁ ପ୍ରବଳ ସଂଗ୍ରାମରେ ଆଚ୍ଛନ୍ନ କରି ରଖିବି ଶେଷ ପର୍ଯ୍ୟନ୍ତ, ମୁଣ୍ଡ ନଇଁବ ନାହିଁ, ଏହା ମଧ୍ୟ ସଂକଳ୍ପ କରିଛି । ତାକୁ ମାରିବା କଳ୍ପନା ମୋତେ ସମସ୍ତ ସମୟରେ ଆବିଷ୍ଟ କରିଥିଲେ ମଧ୍ୟ, ମୁଁ ଯେ ମରିବି, ଏକଥା ମୁଁ ନିଶ୍ଚିତ ଜାଣିଛି । ମୋର ଦଶଟା ମୁଣ୍ଡକୁ ଦଶଥର ହାଣି ସେ କ୍ଳାନ୍ତ ହୋଇପଡ଼ିଛି । ମୁଁ ମରିବା ପୂର୍ବରୁ ସେ ଦୂରପର କଅଁଳ ମାନବଟିକୁ ଦେଖି ସନ୍ଦେହ କରିଛି; ଏ କ'ଣ ସେଇ ବଜ୍ରପୁରୀ ପରି ଟାଆଁସା ଲୋମଯୁକ୍ତ ଦୁର୍ଦ୍ଧର୍ଷ ଶୁକର ?

ଦ୍ୱାପରରେ ତା' ସାଙ୍ଗେ ଯେତେବେଳେ ମୋର ଭେଟ ହୁଏ, ସେ ମୋର କୁଟୁମ୍ବୀ, ମୋର ଖୋଦ ଭଣଜା ! ମୋର ଚରମ ବିପତ୍ତିକୁ ଏତେ ପାଖାପାଖି ପାଇବାର ପ୍ରଥମ ଚମକ ସେ ଏଥର ହିଁ ମୋତେ ଦେଇଛି । ଶୁଣିଲି ଯେ, ସେ ଗୋପରେ ବଢ଼ୁଛି । ତା'ର ସମ୍ଭାବନାକୁ ସୁଦ୍ଧା ନାଶ କରିବାକୁ ଯାଇ ମୁଁ ଗୁଡ଼ିଏ ବାଳକଙ୍କୁ ମାରିପକାଇଲି । ଶେଷରେ ଆଉ ସହିପାରିଲି ନାହିଁ । ତାକୁ ନିମନ୍ତ୍ରଣ କରି ଆଣିଲି, ସ୍ୱଜନ କୁଟୁମ୍ବୀର ଅଧିକାରରେ, ମାମୁଁ ପଣେ, ରାଜାର ଆଦେଶରେ । ଦେଖୁ ଦେଖୁ ମୁଷ୍ଟିକ ଚାଣୁରକୁ ସୁଦ୍ଧା ନିପାତକରି ନୂଆମେଘ ପରି ସେ ଉଠିଆସିଲାବେଳକୁ ମୁଁ ଚାହିଁଦେଲି । ତାର ଆୟୁଧ ନ ଥିଲା; ମୋର ମଧ୍ୟ ଆୟୁଧ ନ ଥିଲା; ପ୍ରତିଦ୍ୱନ୍ଦ୍ୱୀ ହୋଇ ଯୁଦ୍ଧ କରିବାର ଅବକାଶ ମଧ୍ୟ ନ ଥିଲା । ଗୋପ ମଥୁରାର ବ୍ୟବଧାନ ହଠାତ୍ ଘୁଞ୍ଚିଗଲେ, ସେଇ ଚମକରେ ମୁଁ ବିକଳ ବିଲୟପ୍ରାପ୍ତ ହୋଇଯାଏ । ତାକୁ ସେମିତି ମୁହାଁମୁହିଁ ରଖିଦେଲେ ମୋ ସ୍ଥିତି ଆଉ ସମ୍ଭବ ନୁହେଁ ।

ଅଧୁନା ହୁଏତ କଥା ଟିକିଏ ନିଆରା । ଭୟ ଆଗ ଅପେକ୍ଷା ଅନେକ ବେଶି, ସନ୍ଦେହ ମଧ୍ୟ ଆଗଠାରୁ ହଜାରେ ଗୁଣ ଅଧିକ । ଏଥର ସେ ଆଉ କୁଟୁମ୍ବୀ ନ ହୋଇ ହୁଏତ ଆହୁରି ପାଖେଇ ଆସିବ । ମୋ ଭିତରୁ ହିଁ ସେ ହୁଂକାରି ଉଠିବ ବୋଲି ମୁଁ ଏତେ ଭୟ କରିଯାଇଛି । ମୁଁ ଏ ସମଗ୍ର ସୃଷ୍ଟିଟାକୁ ଅଣୁପରମାଣୁରେ ଭାଙ୍ଗି ଭାଙ୍ଗି କେଉଁଠି ହେଲେ ତା'ର ଆଭାସ ପାଇପାରୁନାହିଁ । ସେ ଘୁଞ୍ଚିଯାଇଛି କାହିଁ କେଉଁ ଅଜ୍ଞାତ ବସ୍ତୁପୁର ଅନ୍ତରାଳକୁ । ମୁଁ ମୋ ଭିତରକୁ ମଧ୍ୟ ଶିରା ଉପଶିରା ଆଉଡ଼େଇ ଦେଖିଦେଇଛି । ସବୁଠି କେବଳ ନାହିଁ, ନାହିଁ, ନାହିଁ ଶୁଣିଆସିଛି; ମୋତେ ଅନୁଭବ ହେଉଛି ଯେ ଏଥର ସେ ବସ୍ତୁପୁର ପର୍ଦ୍ଦା

Digitized by srujanika@gmail.com

ତୋଳ ହଠାତ୍ ଉଦ୍ବର୍ତ୍ତି ଆସିବ । ଅଣୁ ପରମାଣୁ ସଚେତନ ହୋଇ ଉଠିବେ । ଘାଞ୍ଜିକନା ଏ ସମଗ୍ର ବସ୍ତୁ ତୋରଣ ମିଳେଇଯିବ ଏବଂ ସେଶ୍ବ କେବଳ ଜଳେ, ସ୍ଥଳେ, ଅନ୍ତରୀକ୍ଷେ ବର୍ତ୍ତମାନ ହୋଇଯିବ । ···ମୁଁ ସନ୍ତର୍ପଣରେ ଛକିଛି ସେ ମୁହୂର୍ତ୍ତଟାକୁ; ମୋର ଚରମ ପ୍ରଳୟର ମୁହୂର୍ତ୍ତଟାକୁ !

---

Digitized by srujanika@gmail.com

# ହାଟ ବାହୁଡ଼ା

କଣାବିକା ସରୁ ସରୁ କେମିତି କେଜାଣି ବେଳ ବି ବୁଡ଼ିଯାଏ । ଯେଉଁମାନେ କଅଁଳିଆ ଖରାରେ ଅଳ୍ପ କିଣି ସଉଦା ସାରିଦେଇ ଫେରିଯାଆନ୍ତି, ସେମାନଙ୍କ କଥା ନିଆରା । ସେମାନେ ସବୁ ପୁଣ୍ୟବନ୍ତ ପୁରୁଷ । ଦିନସାରା ପସରାରୁ ପସରାକୁ ଢୋଷାରି ହୋଇ ବାର ପ୍ରକାର ଗଣ୍ଠିରି କାନ୍ଧେଇ ଫେରିବାର ଦୁର୍ବିପାକ ତାଙ୍କର ନ ଥାଏ । ପୁଣି ଏସବୁ ମୁଣ୍ଡେଇ ପଛେ କାହାକୁ ଗୋଟାଏ ଗାରଡ଼ ବା ଗୋଟାଏ ପୋଡ଼ୁଅ କିଣିବାକୁ ବାକି ଥାଏ, ତା'କଥା କହିଲେ ନସରେ । ସେ କୌଣସି ପ୍ରକାରେ କିଛି ଅନ୍ନ ବ୍ୟବସ୍ଥା କରିଦେଇ ଦି'ପହର ମୁଣ୍ଡାଳି ହାଜର ହୋଇଯାଏ ପଶୁଙ୍କ ଗୋଠରେ । ସହସ୍ର ସଂଖ୍ୟାରେ ଭରବାନ୍ଧା ପଶୁ ଗଛ ଗୁଳିତଳେ ହାଇ ମାରୁଥାନ୍ତି । କାଳିଆ, କପିଳ, ବଡ଼ଶିଙ୍ଗା, ଲଣ୍ଡା, ଗ୍ଲୋଠ, ବଡ଼, ମହିଷ—ଏମିତି କେତେ ଧରଣର ଗଦାଏ ଗଦାଏ ଅସହାୟ ନିରୀହ ପଶୁଙ୍କୁ, ଗୃତେରି ଲେଖାଁ ଦୋଫାଳ ଖୁରା ଉପରେ କୁଢ଼େଇ ହୋଇ ରହିଥାନ୍ତି । ତାଙ୍କରି ଭିତରେ ସେ କୁଟା, ଗୋବର ଏବଂ ପଞ୍ଚଗବ୍ୟର ଦୁର୍ଗନ୍ଧଭିତରେ ତାକୁ ବୁଲିବାକୁ ହୁଏ । ଯା' ପିଠି ଥାପୁଡ଼ାଇ, ତା' ଲାଞ୍ଜ ମୋଡ଼ି ବାଛିବାକୁ ହୁଏ । ପଶୁମାଲିକ ମୁହଁରୁ ପିକ କାଢ଼ି ଆଉ କାହାକୁ ଗୃହିଁଲା ପରି ମୂଲ ହାକେ । ଛେଳି ମେଣ୍ଢାଙ୍କ ବୋବାଳି ଭିତରେ କୌଣସି ପ୍ରକାରେ କିଛି ଠଙ୍କା ଗଣାଗଣି ପରେ ପଘାଖଣ୍ଡେ ଏ ହାତରୁ ସେ ହାତକୁ ହୋଇଯାଏ । ଗୋଟିଏ ହାତରେ ପଘା, ଆର ହାତରେ ଗୁଠ, କାନ୍ଧରେ ଗଣ୍ଠିରି । ଗୋରୁ ହାଟର ଧୂଳି ପାରିହୋଇ ସେ ଥରେ ପଛକୁ ଅନାଏ । ସେଦିନର ସୂର୍ଯ୍ୟ ପାଚି ଆସିଥାଏ । ନଇଁଆସିଥାଏ ପଶ୍ଚିମର ଶ୍ମଶାନକୁ । ଆଉ ଗୋଟିଏ ସୂର୍ଯ୍ୟର ସ୍ୱପ୍ନ ତାକୁ ହୁଏତ ହିମ୍ମତ ଯୋଗାଏ; କିନ୍ତୁ ଗଛଆଢ଼ୁ ଦିଗ୍‌ବଳୟର ସେ ପାରିରୁ ଘେରି ଆସୁଥିବା ଅନ୍ଧାରକୁ ଚମକିଲା ପରି ସେ ଅନାଏ; ଏବଂ ନିଘୁଞ୍ଚିଆ ଶଗଡ଼ ଦାଣ୍ଡି ଉପରେ ପୋଡ଼ୁଅ ପିଠିରେ ଗୁଠ ପିଟିଦେଇ ଠାଉ ଠାଉ ଘରକୁ ବାହୁଡ଼େ । ସେ ହାଟ ବାହୁଡ଼ା ।

Digitized by srujanika@gmail.com

ଏ ଚାଳକ ତା'ହେଲେ ଏଇଭଳି ସବୁଗଲି । କଣାବକା ଲାଭକ୍ଷତି ହିସାବ ଯୋଡ଼ ଯୋଡ଼ ସେ କ୍ଲାନ୍ତ ବୋଧକରେ । ଭାବେ ଯେ, ଅନେକ କିଛି ହୋଇ-ପାରିଥାନ୍ତା; କିନ୍ତୁ ହେଲାନାହିଁ । ଅନେକ ବାକିଆ କାମ ମନେପଡ଼ିଯାଏ । ଅନେକ ଅପୂର୍ଣ୍ଣ ଇଚ୍ଛା, ଅନେକ ଯୋଜନା ମନଭିତରର ଛୁ ଛୁ ସବୁ ଗୋଟାଏ ଦୀର୍ଘ-ଶ୍ୱାସରେ ଝରିଯାଏ । ତା'ର ଅବସନ୍ନ ଗୋଡ଼ଯୋଡ଼ିକୁ କମ୍ପା ଏକ ମୁହାଁ ଚାଲିଥିବା ପଶୁଟିକୁ ସେ ଓଟାରି ରେକିପାରେ ନାହିଁ । ନିଜେ ପଦାରେ ବନ୍ଧା ପଡ଼ିଥାଏ । ଭିଡ଼ ହୋଇ ଆଗେଇ ଚାଲିଥାଏ । କାହିଁ ସେ ଅନ୍ଧାର ଭିତରେ ଗାଁ ମଶାଣି ପାରିହୋଇ କୁଆଡ଼େ ତା' ଘର । ବାଟ ଅନେକ, ଧୂଳି ଅନେକ ! ଆଉ ବେଳ ନାହିଁ ।

ସବୁ ସବୁଗଲେ ନିଶ୍ଚୟ କ୍ଲାନ୍ତ ଲାଗେ; କିନ୍ତୁ ବେଶି କ୍ଲାନ୍ତ ଲାଗେ ଯଦି ଶେଷ-ବେଳକୁ ଅନୁଭବ ହୁଏ ଯେ ସେ ଠକିଯାଇଛି, ଯାହା ହୁଏତ ଦେଇଛି, ତା'ଠାରୁ ବେଶି କମ୍ ପାଇଛି ବା ଆଦୌ ପାଇନାହିଁ । କେବଳ ହାଟ ବାହୁଡ଼ା ପାଇଁ ନୁହେଁ, ଜୀବନର ଗୋଟାଏ ନିର୍ଦ୍ଦିଷ୍ଟ ମୋଡ଼ ପାଖରେ ଏହିଭଳି ସବୁ ହାରିଯାଇଥିବା, ସବୁ ଠକିଯାଇଥିବା ମନୋଭାବ ଆସି ପହଞ୍ଚିଯାଏ । ବୟସ ସେତେବେଳକୁ ଚାଲିଆସିଥାଏ । ଯେଉଁମାନଙ୍କଠାରୁ ସେ ଅକାତର, ଅକୁଣ୍ଠିତ ସ୍ନେହ ଆଦର ପାଇ ବଢ଼ି ଆସିଥିଲା, ସେ ପିତୃକୁଳକୁ ହୁଏତ ସେ ଶ୍ମଶାନରେ ବିସର୍ଜି ଆସିଥାଏ । ଚାରିଆଡ଼କୁ ଚାହିଁ ଦେଖିଲେ ବନ୍ଧୁ କୁଟୁମ୍ବୀ ସମସ୍ତେ ଯେ ଯାହାର ଧନ୍ଦାଧରି ବ୍ୟସ୍ତ ଥାଆନ୍ତି । ତା'ଆଡ଼କୁ ଫେରି ଚାହିଁବାକୁ ତାର ଅବସର ନଥାଏ । ଘର ଭିତରେ ମଧ୍ୟ ମମତାର ଡୋରି ହୁଗୁଳି ଆସିଥାଏ । ସେ ଅନୁଭବ କରେ ଯେ, ଏଥର ବାହୁଡ଼ିଗଲେ ହୁଏ । ଜୀବନଧର୍ମ ଯାହା ଉପରକୁ ଉପରକୁ ଶିଖାମେଲି ଜଳି-ଉଠୁଥିଲା, ତା' ଶେଷରେ ଇନ୍ଧନଗର୍ଭକୁ ନଇଁଆସେ । ସେ ପ୍ରସ୍ତୁତ ହୋଇଯାଏ ବଞ୍ଚିବା ପାଇଁ ନୁହେଁ, ଆଉଗୁଡ଼ିଏ ଜଳିବା ବା ଜାଳିବା ପାଇଁ ନୁହେଁ, ଏଠୁ ସଉଦା ସାରି ଫେରିସିବାକୁ । ଏ ନିର୍ମମ ବ୍ୟବସାୟୀଙ୍କ ହାଟରେ ସମସ୍ତେ ଛକି ବସିଛନ୍ତି ଲାଭ ଉଠାଇବାକୁ । ସୁବିଧା ପାଇଲେ କେହି କାହାକୁ ଛାଡ଼ିବେ ନାହିଁ । ବଣଜନ୍ତୁ ସିନା ତାଙ୍କ ନଖ, ଦାନ୍ତ, ଲାଙ୍ଗୁଡ଼ ଲୁଚାଇ ପାରନ୍ତି ନାହିଁ; କିନ୍ତୁ ମଣିଷ ସବୁ ତା ପେଟ ଭିତରକୁ ଠୋକିଦେଇ ଉପରେ ଚକ୍କଣ ହୋଇ ବସିଥାଏ । ତାକୁ ଥରେ ଚହ୍ନିଦେଲେ ମନ ଛି ଛି ଧରିସିବ । ଆଉ ନୁହେଁ, ଏଗୁଡ଼ାକୁ ବିଶ୍ୱାସ କରି ପାଖେଇ ହେବ ନାହିଁ—

ହୁଏତ ହାରିଗଲେ ମନ ଭିତରେ ହତାଶା, ଗ୍ଲାନି, ଆରପକ୍ଷପାଇଁ କିଛି କ୍ରୋଧ, ଆକ୍ରୋଶ ସବୁ ମିଶି ଗୋଟାଏ ଧୂଆଁ ସୃଷ୍ଟି କରିଥାନ୍ତି, କିନ୍ତୁ କିଛି ସମୟ ପରେ

Digitized by srujanika@gmail.com

ଝାଳ ସରସର ଦେହକୁ ଗୋଟାଏ କ୍ଳାନ୍ତ ମାଡ଼ି ଆସେ । କେମିତି ଆଉ ଖଣ୍ଡେ ବାଟ ଗଲେ ଟିକିଏ ଏ କୋଳାହଳରୁ ମୁକ୍ତ ହୋଇପଡ଼ିବାକୁ । ସବୁ ଚିଠା, ନଥିପତ୍ର, ଦଲିଲ୍, ଦସ୍ତାବିଜ୍ ଉପରେ ମୂଠା ଗୁଡ଼େଇ ଥୋଇଦେବାକୁ ମନ ଡାକେ । ମନ ଏତିକିବେଳେ ଥକି ଯାଇଥାଏ । ଆଉ କାରବାର ପାଇଁ ତା' ଭିତରେ ମୋଟେ ପ୍ରବୃତ୍ତି ହୁଏ ନାହିଁ । ହେଲା, ଗୋଟି ଗୋଟି କରି ସମସ୍ତଙ୍କୁ ପରଖି ସାରିଲଣି । କାହା ପାଖରେ କିଛି ନାହିଁ । ସେମାନେ ସମସ୍ତେ ମୋ ପରି ଗୋଟାଏ ଗୋଟାଏ ବିଡ଼ମ୍ବିତ ଜୀବ । ଆହା ବିଚ୍ଛିନ୍ନମାନେ—

ଏଭଳି ବୁଝିଗଲାପରେ ତାର ଯେଉଁ ସହନଶୀଳତା ଆସେ, ଯେଉଁ ପ୍ରଶାନ୍ତି ଆସେ, ଯଦି ସେଭଳି ମୂଳରୁ ଆରମ୍ଭ କରିଥାନ୍ତା, ସଂସାର ବ୍ୟବସାୟରେ କେହି ତାକୁ ଠକି ପାରିନଥାନ୍ତେ । ସବୁ ବୁଝି ହିସାବ ନିକାଶ ଯୋଡ଼ିଲାବେଳକୁ କିନ୍ତୁ ବେଳ ଗଡ଼ିଗଲା । ସେ ଖୁବ୍ ଡେରିରେ ଚିହ୍ନେ । ସେଭଳି କେତେଜଣ ପୁଣି ଫେରିଆସି କୋଳାହଳ ଭିତରେ ନୂଆ ପରୀକ୍ଷା କରିବାକୁ ମଧ୍ୟ ପ୍ରୟାସ କରିଛନ୍ତି— ନିଷ୍କ୍ରାନ୍ତ ପରେ ପଛକୁ ଫେରିବା ଏ ସ୍ରୋତରେ ମଧ୍ୟ ସମ୍ଭବ ନୁହେଁ । ଯଦି ସମ୍ଭବ କିନ୍ତୁ ସ୍ଥାୟୀ ସ୍ୱାଭାବିକ ନୁହେଁ ।

ଏ ନୂଆ ମୂଲ୍ୟାଙ୍କନ ବେଳେ ହତାଶା ତ ନିଶ୍ଚୟ ଆସେ; କିନ୍ତୁ ହାଟ ବାହୁଡ଼ା ମନର ସେ ଗୋଟିଏ ବ୍ୟତିକ୍ରମୀ ପ୍ରକ୍ରିୟା, ସେ ଖୁବ୍ ଶୀଘ୍ର ଚାଲିଯାଇ ଗୋଟିଏ ସ୍ଥାୟୀ ଭାବ ଆସେ; ତା' ହେଲା ନିସ୍ପୃହା—ନିର୍ଲିପ୍ତତା, ଗୋଟାଏ ଅସମ୍ପର୍କ । ସେ ଆସ୍ତେ ନିଜକୁ ଏକୁଟିଆ ଅନୁଭବକରେ, ସତେ ବା ସେ ଏତେ ବଡ଼ ପୃଥିବୀରେ ଜଣେ ଅପରିଚିତ ବିଦେଶୀ—ଅସମ୍ପର୍କରେ ମାନ ଅପମାନ, କ୍ରୋଧ ଘୃଣା ଆଦି ସମ୍ଭବ ନୁହେଁ—ସେସବୁ ନିର୍ଦ୍ଦିଷ୍ଟ ସମ୍ପର୍କର ପ୍ରତିକ୍ରିୟା—ସମ୍ପର୍କ ହୁଗୁଳିଗଲେ ବହିଃଖଣ୍ଡପରି ସେ ଠିଆ ରହିଯାଏ । ହଜାର ବାଟୋଇ ତା ପାଖଦେଇ ଚାଲିଯାନ୍ତି, ଏ ନିର୍ଲିପ୍ତତା ମଧ୍ୟ ଆସ୍ତେ ଉଦାର ହୋଇଯାଏ, ଖୁବ୍ ବିସ୍ତୃତ ବେଳାଭୂମି ଉପରେ କାକର ଝରିଯାଏ । ସେ ଅସମ୍ପର୍କ ଭିତରେ ହିଁ ସମସ୍ତଙ୍କୁ ଭଲପାଏ । କାହାକୁ ଜାଣେ ନାହିଁ, ପରିଚୟ ମାଗେ ନାହିଁ । ବାର୍ତ୍ତାଲାପ ମଧ୍ୟ କରେ ନାହିଁ । ଅଥଚ କେମିତି ଗୋଟାଏ ବିଚିତ୍ର ଭାବରେ ସେ ତାକୁ ଭଲ ପାଇଯାଏ । ଏ ଭଲ ପାଇବାରେ କିନ୍ତୁ ବାଛବିଚାରର କିଛି ନାହିଁ । ଅଧିକାର ଜାହିର କରିବାର ବ୍ୟଗ୍ରତା ନାହିଁ । କିଛି ପାଇଯିବାର ଉତ୍କଣ୍ଠା ନାହିଁ । ସେ ନିର୍ବିଚାରରେ ସମସ୍ତଙ୍କୁ ସହିପାରେ, ସବୁ ଗ୍ରହଣ କରିପାରେ । ତା'ର ଯେଉଁ କେନ୍ଦ୍ରରେ ପ୍ରତ୍ୟୁଜନବେଳେ ଜୁଆର

Digitized by srujanika@gmail.com

ଉଠୁଥିଲି ଏବଂ ତାକୁ ଅସ୍ଥିର କରୁଥିଲି, ତା ଆଉ କାମ କରେ ନାହିଁ । ସୁନ୍ଦର ଅସୁନ୍ଦର ଭଲମନ୍ଦର ମଝି ପାଚେରି ଆସ୍ତେ ଭାଙ୍ଗିପଡ଼େ—ସେଇ ଅନୁପାତରେ ଭାଙ୍ଗିପଡ଼େ ମନ ଭିତରର ରାଗ, କ୍ଳେଶ, ମମତାର ଡୋଳ ଧରିଥିବା ସମ୍ପର୍କ ସବୁ ! ସଂସାର ବେପାରରେ ଏଗୁଡ଼ିକ ଆମେ ଦେଉ ଏବଂ ପ୍ରତିଦାନରେ କିଛି ପାଉ ।

ହାଟରୁ ବାହୁଡ଼ିବାବେଳେ ସେଇ ପଶୁଟି ସହିତ ବନ୍ଧା ସମ୍ପର୍କ ରଖିବାକୁ ପଡ଼ିଥାଏ । ଶରୀର ଧର୍ମ ସମ୍ପୂର୍ଣ୍ଣ ମୁକ୍ତ ସନ୍ନ୍ୟାସରେ ମଧ୍ୟ ବିଲୁପ୍ତ ହୁଏ ନାହିଁ । ଶେଷ ପର୍ଯ୍ୟନ୍ତ ସେ ତା'ର ଦାବୀ ବଜାୟ ରଖେ । ଛିଡ଼େ ଛାଡ଼େ ନାହିଁ; କିନ୍ତୁ ଉପାୟ କ'ଣ ? ସେ ବିଚରା ମଧ୍ୟ ଅସହାୟ । ଅରଣ୍ୟର ଅଜଗର ପରି ତାକୁ କର୍ମଫଳ ସହିବାକୁ ପଡ଼େ । ତାହାରି ପରିସର ଭିତରେ ଜନ୍ମମୃତ୍ୟୁ, ଜରାବ୍ୟାଧି ଯଥାବିଧି ସଂକ୍ରମିତ ହୁଅନ୍ତି । ଯନ୍ତ୍ରପରି ଚାରୋଟି ଖୁରରେ ଏ ଜଡ଼ପିଣ୍ଡଟି ସେଇ ପଦାଟି ସକାଳେ ଭିଡ଼ହୋଇ ଚାଲିଥାଏ । ମୁହଁ ସଞ୍ଜବେଳେ ଯେତେବେଳେ ଅସୂର୍ଯ୍ୟ ଆକାଶରେ ବିସ୍ତୀର୍ଣ୍ଣ ଅନ୍ଧକାର ନଇଁ ଆସୁଥାଏ, ପରିଶ୍ରାନ୍ତ ହାଟ ବାହୁଡ଼ା ପଦାଟାକୁ ହୁଗାଳିଦିଏ ।

---

Digitized by srujanika@gmail.com

# ଶୂନ

ଛାତ୍ର-ଜୀବନର ଅନେକ ମିଷ୍ଟ ମିଷ୍ଟ ଆନନ୍ଦ ଭିତରୁ ଗୋଟିଏ ହେଲା ଯେ, ପାଟିଗଣିତର ଶତପଦୀ ବତ୍ସପରି ଲମ୍ବା ଏବଂ ପାହାଡ଼ିଆ ଭଗ୍ନାଂଶରେ ବୋଝେଇ ହୋଇଥିବା ଗୋଟାଏ ଖୁବ୍ ଜଟିଳ ଅଙ୍କଟାକୁ ସରଳ କରୁ କରୁ ସବୁ ଛିଣ୍ଡିଯାଇ ଶେଷକୁ ଫଳ ଚଢ଼ିଯାଏ ଶୂନ । ଶୂନ ଫଳ ପଡ଼ିଗଲେ, ଆଉ କାହାକୁ ପଚାରିବା ଦରକାର ନାହିଁ । ସେଇଟା ନିଶ୍ଚୟ ଠିକ୍, ସେଥିରେ ଭୁଲ୍ ହେବାର ସମ୍ଭାବନା ନାହିଁ । ସେ ଅଦ୍ଭୁତ ଜଙ୍ଗଲ୍ କାଟି କାଟି ଯଦି ଆଉ ଜଣେ ବାହାଦୁର୍ ଯାଇ ଗୋଟାଏ ଅଟୁଣ୍ଡା ଗଣ୍ଡିଆ ଭଗ୍ନାଂଶଠେଇଁ ହାବୁଡ଼ିଗଲା, ସେ ନିଜେ ଜାଣିଯାଏ ଯେ ସେ ଭୁଲ, ତା' ବାଟ ଭୁଲ, ତା' ପାଠ ଭୁଲ—ସବୁ ଭୁଲ । ଅଙ୍କ ଶେଷରେ ଯେଉଁ ଗେଣ୍ଡିଆ ଶୂନଟିକୁ ଝିଣ୍ଟ ଖୋଳ ଭିତରୁ ମୁକ୍ତାମଞ୍ଜି ପରି ଖସେଇ ଦେଇ ଆରଜଣକ ବହୁଭାର ହୋଇ ବସିଥାଏ, ତାକୁ ଏ ବିଚାରା ଖୋଜ ଖୋଜ ପାଏନାହିଁ । ପାଏ କୌଣସି କୁହୁଡ଼ିରେ ଛିଣ୍ଡୁ ନଥିବା ଗୋଟାଏ ସୁବୃହତ୍ ଗଣ୍ଡି—ପାଞ୍ଚଶ' ଅଣେଇଶିର ତିନିଶ' ପତର ! ତା'ର ଖ୍ୟାଲ ଫିଟିଯାଏ । ସେ ତେଣିକି ଜାଣିଯାଏ ଯେ, ଏଠି ଲୁଚି ରହିଥିବା ଶୂନଟି ହୁଏତ ଅଣ୍ଡାକାର ରୂପରେ ପରୀକ୍ଷା ଖାତାର ଖୋଳ ଉପରେ ଆସି ଗୋଟାଏ ହାଣ୍ଡିଖୋଳପରି ମଡ଼େଇହୋଇ ପଡ଼ିବ । ତା' ତଳେ ଚାପି ହୋଇ ମରିଯିବ ତା'ର ସବୁ ସମ୍ମାନ, ସବୁ ଆଶା, ଆକାଙ୍କ୍ଷା । 'ଶୂନ'ର ଏପରି ଆବିର୍ଭାବ ହୁଏତ ଚୂଡ଼ାନ୍ତ ପରାଜୟ ବିପର୍ଯ୍ୟୟ ଏବଂ ମୃତ୍ୟୁର ସୂଚନା; କିନ୍ତୁ ସେ ବଣେ ବଡ଼ ନିରୀହ ! କିଛି ବାଙ୍କ ନାହିଁ, ଆଙ୍କୁଡ଼ା ନାହିଁ; ଛନ୍ଦଣି ନାହିଁ ! ବର୍ତ୍ତୁଳ ସ୍ୱୟଂସମ୍ପୂର୍ଣ୍ଣ, ଆତ୍ମାଭିମ ଜିନିଷଟିଏ ! ସେ ବଣେ ସିନା ସେମିତି ସରଳ, ତାକୁ ଯଦି ଆଉ ଟିକିଏ ବଡ଼ କରିବାକୁ ଗୁଣନ କର, ସେ ଗୁମାନରେ ମୋଟେ ଝୁଙ୍କେ ନାହିଁ । କହେ, "ମତେ ତମେ ଆଉ ବଡ଼ କରିପାରିବ ନାହିଁ, ମୁଁ ପରା ଅନନ୍ତ । ଯଦି ପ୍ରମାଣ ଚାହଁ, ମୋତେ ଭାଗକରି ପରୀକ୍ଷା କର !" —ଏହିପରି ଗଣିତ ଶାସ୍ତ୍ର ଭିତରେ ଏ ନିରାଲମ୍ବ ପେଣ୍ଡୁଟି ନାନା ବିଚିତ୍ର ଖେଳ ଖେଳିଯାଏ ।

Digitized by srujanika@gmail.com

ଏ ଟେଣ୍ଟ୍ରି କିଛି ଗଢ଼ିନାହିଁ । ଶୂନର ଗତି ସମ୍ଭବ ନୁହେଁ, ସେ ସ୍ଥିର ଅଚଞ୍ଚଳ । ସେ କେବଳ ଥାଏ । ଶାମୁକାର ହାଡ଼ ମାଂସ ଆବରଣ ଭିତରେ ମୁକ୍ତା ମଞ୍ଜିଟି ଯେମିତି ଝଲ ଝଲ ହେଉଥାଏ, ପ୍ରାୟ ପ୍ରତ୍ୟେକ ବସ୍ତୁଭିତରେ ଶୂନ ସେଇଭଳି ସ୍ୱୟଂସମ୍ପୂର୍ଣ୍ଣ ହୋଇ ବିଦ୍ୟମାନ । ଆଖି ମେଲି ଦେଖୁଥିଲା ପର୍ଯ୍ୟନ୍ତ ଇଏ କାଠ, ସିଏ ପଥର, କିନ୍ତୁ ବସ୍ତୁବ୍ୟୂହକୁ ଭାଙ୍ଗିଦେଲେ ଯେଉଁ ଅଗଣିତ ଅଣୁ ଆସିଯାନ୍ତି, ସେମାନେ ସରଳୀକରଣର ପ୍ରଥମ କୁଟିଳ ବନ୍ଧନୀ । ସେଥିରୁ ଗୋଟିକୁ ଅତି ସୂକ୍ଷ୍ମ ଯନ୍ତ୍ର ଲଗେଇ ଫିଟେଇଦେଲେ, ତା'ଭିତରୁ ଫାଙ୍କିକିନା ଗୋଟିଏ ଶୂନ ବାହାରି ଆସେ । ଦୁଇଫାଳ ଖମ୍ବ ଭିତରୁ ସେ ବିଚିତ୍ର ବସ୍ତୁକୁ ଉଙ୍କି ଆସିବାର ଦେଖି ପ୍ରହ୍ଲାଦ ମଧ୍ୟ ବିସ୍ମିତ ହୋଇଯାଏ । ସେଇଠି କାଠପଥର ମଝିରେ ଆଉ କୌଣସି ବ୍ୟବଧାନ ବା କୁଟୀଳବନ୍ଧନୀ ରହେନାହିଁ । ସେମାନେ ସବୁ ଗୋଟାଏ ପ୍ରକାଣ୍ଡ ଗ:ସା:ଗୁ:ରେ ଛିଣ୍ଡିଯାନ୍ତି, କିଛି ଅବଶେଷ ରହେନାହିଁ । ବୀଜଗଣିତର ବିଚ୍ଛି ଉଭେଇଯାଏ, ସମଗ୍ର ବସ୍ତୁ ତୋରଣ ଉଭେଇଯାଏ । ପରମ ସତ୍ୟଟି ବର୍ତ୍ତୁଳ ରୂପରେ ଆସି ସବୁ ସମାଧାନ କରିଦିଏ । ଆମେ ପରମ ଆତ୍ମତୃପ୍ତିରେ ପରମ ଆହ୍ଲାଦରେ ଏବଂ ସତ୍ୟଧର୍ମର ନିଷ୍ଠୁମ ସ୍ୱରରେ କହୁ, "ଏସବୁ ସମାନ ଶୂନ ! ଅଣୁଠାରୁ ମହାକାଶ ପର୍ଯ୍ୟନ୍ତ ସବୁ କେବଳ ଗୋଟିଏ ଶୂନ । ଆମକୁ ଯାହା ରୂପ ରଙ୍ଗ ଦିଶେ, ସେଗୁଡ଼ିକ କେବଳ ସେଇ ବିଭିନ୍ନ ଦୈର୍ଘ୍ୟର ଗୁଡ଼ିଏ ଜଟିଳ ବନ୍ଧନୀ !

ଶୂନଟି ଗୋଟିଏ ନୀରବଶେଷ ଅବସ୍ଥା । ଯାହା ଥିଲା ତାହା ସେଥିରୁ ଆହାୟ ହୋଇଗଲେ ବାକି କିଛି ରହେନାହିଁ । ଟଙ୍କା ପଇସା ଘର ମଣିଷ, ପଶୁ, ପକ୍ଷୀ ସବୁ ନିଃଶେଷ ହୋଇଯାନ୍ତି । ପାଣିଗାର ସବୁ ଲିଭିଯାଏ । ଆମେ ଭାବୁ କିଛି ରହେନାହିଁ; କିନ୍ତୁ ରହେ । ପାଣିର ଗାର ଲିଭିଯାଏ ସତ; କିନ୍ତୁ ପାଣି ଆସି ଭରପୂର ହୋଇଯାଏ । ସେଇଭଳି ସମସ୍ତଙ୍କର ମୂଳ ଉପାଦାନ ଏଇ ଶୂନ । ସେ ସମସ୍ତଙ୍କର ପ୍ରତିନିଧିତ୍ୱ କରେ, ସେମାନେ ଚାଲିଗଲେ ତାଙ୍କର ସ୍ଥାନ ପୂରଣ କରେ । ଶୂନ-ସମୁଦ୍ରରେ ସମସ୍ତେ ପାଣିଗାର ପକେଇ ଚାଲିଥାନ୍ତି । ସେଥିପାଇଁ ତରଙ୍ଗ ସୃଷ୍ଟି ହୁଏ ନିଶ୍ଚୟ, ସେହିପରି ସଂଘର୍ଷ ମଧ୍ୟ ହୁଏ । ଫେନ, ଶୀକାର କିଛି ସମୟ ପାଇଁ ନିଜର ଅସ୍ତିତ୍ୱ ଜାହିର କରନ୍ତି । ତା'ପରେ କିନ୍ତୁ ସେଇ ନିସ୍ତରଙ୍ଗ ବର୍ତ୍ତୁଳ ସତ୍ୟ ହିଁ ରହିଯାଏ; ପାରଦ ଟୋପାପରି ଶୁଭ୍ର, ନିଜ ଗୁଡୁଚ୍ଛିରେ ନିଜେ ପ୍ରତିଷ୍ଠିତ, କାଳହୀନ, ଦିଗହୀନ, ନିର୍ଗୁଣ, ଶୂନ୍ୟ !

Digitized by srujanika@gmail.com

ପିଲାଦିନର ଅଭ୍ୟାସବଶତଃ କାଳେ ଅବଧାନେ ନିର୍ବୋଧ ଚତୁଷ୍ପଦ କହି ଗାଳିଦେବେ, ଏଇ ଭୟରେ ଆମେ ଶୂନଟିକୁ ସେତେ ଖୋଲିଖୋଲି ଭଲ ପାଇପାରୁନା । ସେ ମଧ୍ୟ ଅତି ତୀବ୍ର ଅସହାୟତାର ପ୍ରତୀକରୂପେ ଆସି ଉଭା ହୋଇଯାଏ । ମାସର ଶେଷାଂଶରେ ଗୃହକର୍ତ୍ତା ହାତବାକ୍ସ ଦରଣ୍ଡି ଦେଖେ ଯେ ସବୁ ଖର୍ଚ୍ଚ ସରି ଆଉ ବାକି ସାତଦିନ ପାଇଁ କପର୍ଦ୍ଦକ ନାହିଁ । ଗୃହିଣୀ ହାଣ୍ଡି ଦରଣ୍ଡି କେବଳ ତା'ର ବିଶୁଦ୍ଧ ଆୟତନ ଅନୁଭବ କରନ୍ତି; ତଣ୍ଡୁଳକଣାଟିଏ ମଧ୍ୟ ନଥାଏ । ସହରର ଭ୍ରାମ୍ୟାପରି ଗୋଟିଏ କୃଷ୍ଣରୂପ ଆସ୍ତେ ମଡ଼େଇ ହୋଇପଡ଼େ ନିଃସ୍ୱ ପରିବାର ଉପରେ । ବୁକୁ ଭିତରୁ ନିଃଶ୍ୱାସ ସରିଆସେ । ଆତଙ୍କ, ଆଶଙ୍କାରେ ସେମାନେ 'ଶୂନ'ଟିକୁ ତା'ର ନିର୍ବାତ ପରିଧି ଭିତରେ ଅନୁଭବ କରନ୍ତି, ଲୁଣର କଣ୍ଢେଇଟି ସତେ ବା ସମୁଦ୍ର ଲହରୀରେ ନିର୍ବିରୋଧ ମିଳେଇ ଯାଏ । ···ଆଉଦିନେ ସେପରି ସେ ଅନୁଭବ କରନ୍ତି ଯେ ଗୃହ ଭୋଜି ପରେ ପଞ୍ଚାବନ ବର୍ଷ ସରିଗଲା ! ଅଣିଣ ସଂଧ୍ୟାରେ ବିଗତ ବର୍ଷଗୁଡ଼ିକର ଭାରି ଭାରି ସ୍ୱପ୍ନ ଉପରେ ମଡ଼େଇ ହୋଇପଡ଼େ ସାଜଗୀତର ଚୂଡ଼ାନ୍ତ ଫଳ; ସବୁ ବନ୍ଧନୀ ଖସିପଡ଼ିଲା ପରେ ସେଇ ନିରାବରଣ ଚୂଡ଼ାନ୍ତ ଶୂନ—ଯାହାପରେ ଖାତା କ୍ଲୋଜ୍‌ହୋଇ ଦିଆହୁଏ, ଯାହାକୁ ଆଉ ସନ୍ଦେହ କରିବାରେ କିମ୍ବା ତାର ସତ୍ୟତାକୁ ପ୍ରଶ୍ନ କରିବାର ଅବକାଶ ନଥାଏ ! ବିଦାୟ ମୁହୂର୍ତ୍ତର ଏଇ ସାକାର ରୂପକୁ ପ୍ରତିଟି ବାଷ୍ପରୁଦ୍ଧ ନିଃଶ୍ୱାସରେ ଅନୁଭବ କରିଥିବେ ରାଜା ଦଶରଥ, ଯେତେବେଳେ ସୁମନ୍ତ୍ର ଶୂନ୍ୟରଥ ନେଇ ଫେରି ଆସିଥିବ ଏବଂ କହିଥିବ ଯେ ରାମ, ଲକ୍ଷ୍ମଣ ଓ ସୀତା ବନଗମନ କଲେ; ଅକ୍ରୂର ରଥ ଅଦୃଶ୍ୟ ହୋଇଯିବା ପରେ ଅନୁଭବ କରିଥିବେ ଗୋପୀକୁଳ ଏବଂ ଅନୁଭବ କରିଥିବେ ଶଚୀ ଦେବୀ ଯେତେବେଳେ 'ନିମାଇଁ' ପଛକୁ ନ ଚାହିଁ ଚାଲିଯାଇଥିବେ ସବୁଦିନ ପାଇଁ ! ଏ ଅନୁଭବ ଶୂନ୍ୟତାର ଅନୁଭବ, ଗୋଟାଏ କ୍ରମବର୍ଦ୍ଧିଷ୍ଣୁ ଅସହାୟତାର ଅନୁଭବ, ସେଇଠାରୁ ସବୁ ମନୋରଥ ସରିଯାଉଥିବାର ଗୋଟିଏ କାତର ଅନୁଭବ !

ହଠାତ୍ ମନେହେବ ଯେ ଏ ଅନୁଭବଟି ଗୋଟିଏ ଯନ୍ତ୍ରଣା, ବିରହ ବିଚ୍ଛେଦର ଶୋକାଚ୍ଛନ୍ନ ମୁହୂର୍ତ୍ତର ଯନ୍ତ୍ରଣା ! କିନ୍ତୁ ତାହା ନୁହେଁ । ଶୂନ୍ୟତାର ଅନୁଭବ ଗୋଟିଏ ଦିଗହରା ଅନନ୍ତ ବିସ୍ତୀର୍ଣ୍ଣତା । ହଠାତ୍ ମହାକାଶକୁ ଗଳିପଡ଼ିବାର ଅନୁଭବ ! ଭୟ, ବିରହର ଯନ୍ତ୍ରଣା, ଏପରିକି ଅତି ଅସହାୟ ଏକାକୀତ୍ୱ ମଧ୍ୟ ପରବର୍ତ୍ତୀ ପ୍ରତିକ୍ରିୟା ମାତ୍ର । ଶୂନ୍ୟାବସ୍ଥାରେ ସୁଖ ଦୁଃଖ ନାହିଁ । ସେ ନିର୍ଲୋକ

Digitized by srujanika@gmail.com

ସ୍ଥିତି ରାଜ୍ୟରେ ଏକାନେକର ବିଭେଦ ନାହିଁ । 'ଧନପକ୍ଷ' ଏବଂ 'ଋଣପକ୍ଷ'ର ଯେଉଁଠି ସ୍ୱଭାବ ସମ୍ଭାର ହୁଏ, ଅଗ୍ନି‌ଇନ୍ଧନ ପରି ଯେଉଁଠି ସେମାନେ ପରସ୍ପରକୁ ନିଃଶେଷ କରିଦିଅନ୍ତି, ସେଇ ନିରବଲମ୍ବ ଅବସ୍ଥା ହିଁ ଶୂନ । ଯେଉଁଠି ଯନ୍ତ୍ରଣା ଅନୁଭବ କରିବା କିମ୍ବା ପୂର୍ଣ୍ଣାନନ୍ଦ ଅନୁଭବ କରିବା ପରବର୍ତ୍ତୀ ବିଚାର । ତଥାପି ଜଣାପଡ଼େ ଯେ ସେଇଭଳି ଦୁଇଟି ନିର୍ଦ୍ଦେଶକ ରେଖା ଉଭୟ ପାର୍ଶ୍ୱରେ ସୀମା ରକ୍ଷା ନ କଲେ ଏ ମଧ୍ୟବର୍ତ୍ତୀ ଶୂନ୍ୟଟିକୁ ବୁଝିବା କଠିନ । ଦୁଇଟି ବିପରୀତ ଧାରା ପରସ୍ପରକୁ ନିଃଶେଷ କରୁଥିବା ପ୍ରକ୍ରିୟାର ଅବଚଳିତ ରୂପହିଁ ଶୂନ୍ୟ, ଆୟବ୍ୟୟ ପରି; ଅଗ୍ନି ଇନ୍ଧନ ପରି; କିନ୍ତୁ ଘଟାକାଶ ଭଳି ଶୂନ୍ୟର ଏହା ଗୋଟିଏ ଲୌକିକ ରୂପ ମାତ୍ର । ଏହାର ସ୍ୱରୂପ ସୂକ୍ଷ୍ମାତିସୂକ୍ଷ୍ମ ଅଣୁଗର୍ଭରୁ ପରମବ୍ୟୋମର ଶେଷସୀମାକୁ ଅତିକ୍ରମ କରି ବିଦ୍ୟମାନ । ସେହିଠାରେ ଅଗ୍ନି-ଇନ୍ଧନ ପରି ସଂସାର ପ୍ରବାହ; ଅସଂଖ୍ୟ ଜ୍ୱଳନ୍ତ ଉଲ୍‌କାପିଣ୍ଡର ଘୂର୍ଣ୍ଣନ ସବୁ ନିଶ୍ଚିହ୍ନ ହୋଇ ଶୂନ୍ୟରୂପ ହୋଇଯାଆନ୍ତି । ଏ ଅନୁଭବ ପାଇଁ ବୁଦ୍ଧଙ୍କ ଶରଣ ନେବାକୁ ହେବ କିମ୍ବା ଅନ୍ତତଃ ନେମାଳ ଗାଦି ପାଖରେ ସର୍ବତ୍ୟାଗୀ ଠେକା ଭିଡ଼ିବାକୁ ପଡ଼ିବ ।

ଏକଠାରୁ ପରାର୍ଦ୍ଧ ପର୍ଯ୍ୟନ୍ତ ଚମତ୍କାର ସଂଖ୍ୟା ସୌଧରେ ବିଚରଣ କରୁଥିବା ଅର୍ଥମନ୍ତ୍ରୀ ଏବଂ ତତ୍‌ସଂଲଗ୍ନ ରାଜମନ୍ତ୍ରୀ ଓ ଅନ୍ୟାନ୍ୟ ଅସଂଖ୍ୟ ମନ୍ତ୍ରୀରେ ଏ ବିପୁଳ ସଂସାରଙ୍କୁ ବିଳସୁଥିବା କୌଣସି ମହାଶୟଙ୍କୁ ଶୂନ୍ୟ-ବିହ୍ୱଳ କରି ଗେରୁଆ ପିନ୍ଧେଇବାର ଅଭିସନ୍ଧି ଏଇଠି ନାହିଁ; କାରଣ ନିରବଲମ୍ବି ଶୂନ୍ୟକୁ ଚରମ ସତ୍ୟ-ରୂପେ ଗ୍ରହଣ କରିପାରିବାର ସାହସ ବା କ୍ଷମତା ଏ ଲେଖକର ମଧ୍ୟ ନିଶ୍ଚୟ ନାହିଁ । ସାଧାରଣ ଜୀବନରେ ସାମାନ୍ୟ ଶୂନ୍ୟାଭାସ ଦିଶିଗଲେ କିପରି ପାଦତଳୁ ଭୂଇଁ ଅପସରିଯାଏ, କିପରି ଗୋଟିଏ ସଦ୍ୟ ଉନ୍ମୂଳିତ ବୃକ୍ଷର ଅନୁଭବ ଆସି ସମଗ୍ର ଚେତନାକୁ ଆଚ୍ଛନ୍ନ କରିପକାଏ, ତାହା ସମସ୍ତଙ୍କୁ ଊଣାଅଧିକେ ଗୋଚର ଅଛି । ଏକଦା ପରିପୂର୍ଣ୍ଣ ଠିଙ୍କାଥିଲି ପରି ଖୁବ୍ ମୂଲ୍ୟବାନ୍ ବ୍ୟକ୍ତି ଏବଂ ବସ୍ତୁ ମଧ୍ୟ ଖାଲି ହୋଇଯାଆନ୍ତି । ତାଙ୍କ ଭିତରେ ମଧ୍ୟ ଦରିଣ୍ଡିଲେ ସେହିପରି ଶୂନ୍ୟ ଅନୁଭବ ହୁଏ । ବନ୍ଧୁ, କୁଟୁମ୍ବ, ପରିବାରଙ୍କର ମମତା-ମୂଲ୍ୟ ସବୁ ଖର୍ଚ୍ଚ ହୋଇଯାଇଥିବାର ଅନୁଭବ ହୁଏ । ଏମାନଙ୍କ ମୂଲ୍ୟ ଉପରେ ନିର୍ଭରଶୀଳ ନିଜର ମୂଲ୍ୟ ମଧ୍ୟ ତଦନୁଯାୟୀ ଖର୍ଚ୍ଚ ହୋଇଯାଏ । ଏପରି ଜୀବନରେ ବିଭିନ୍ନ ମୁଦ୍ରାର ମୂଲ୍ୟ ହ୍ରାସ ଘଟୁଥିବାବେଳେ ଶୂନ୍ୟର ଅନୁଭବ କ୍ରମଶଃ ଅଧିକରୁ ଅଧିକ ଭୂମି ଉପରେ ମଜ୍ଜେଇ ହୋଇ ଆସେ । ସେଇ ନିଃସ୍ୱ ଅବସ୍ଥାରେ ସମାନ୍ୟ ଅନୁଶୀଳନ ଓ

Digitized by srujanika@gmail.com

ମନନ କଲେ ଶୂନ୍ୟ ହିଁ ମୂଳ ସତ୍ୟରୂପେ ପ୍ରତିଭାତ ହୁଏ । ଚୂଡ଼ାନ୍ତ ବୈରାଗ୍ୟର ଉଦୟ ହୁଏ । ମନେହୁଏ 'ପ୍ରଦୀପସୂତ୍ର' ହିଁ ସତ୍ୟ ନିର୍ବାଣ ଦୀପରେ ଶୂନ୍ୟତାର ଅନୁଭବ ହୁଏ । ଯେତେବେଳେ କିନ୍ତୁ ସର୍ବସ୍ୱ ନିଃଶେଷ ହୋଇ ତଥାଗତ ନିଃଶେଷ ମଧ୍ୟ ହେବାକୁ ପଡ଼େ ଏବଂ ସତ୍ୟରୂପେ ଗୃହୀତ 'ଶୂନ୍ୟ'ର ଶୂନ୍ୟତା ଆସି ପ୍ରସ୍ତାବିତ ସମ୍ଭାବନା ରୂପେ ଉପସ୍ଥାପିତ ହୁଏ ସେତେବେଳେ ମନନ କ୍ରିୟା ସ୍ତମ୍ଭିତ ହୁଏ, ବାକ୍ ପାଣି ନିରୁଦ୍ଧ ହୋଇଯାନ୍ତି, ଘନ-ନୀରବତା ଭିତରେ ଜୀବନ ଦୀପ ମହା-ଶୂନ୍ୟରେ ନିର୍ବାପିତ ହୁଏ ।

ଯଦି ସେଭଳି ହେଉଥାଏ ହେଉ, ସେଥିରେ ଆମର କିଛି କହିବାର ନାହିଁ; କିନ୍ତୁ ସେଭଳି ନ ହୋଇ ଯଦି ଆଉ ଭଳି ହେଉଥାଏ, ସେଥିରେ ବି କିଛି କହିବାର ନାହିଁ । ଶୂନ୍ୟାଭାସ ନ ଦେଖି ଜଣେ ଯଦି ଚିଦାଭାସ ଦେଖେ ଏବଂ ଶୂନ୍ୟରେ ନ ପହଞ୍ଚି ପର୍ଣ୍ଣରେ ହାବୁଡ଼ିଯାଏ, ସେଥିରେ ପାର୍ଥକ୍ୟ ଆଉ ବିଶେଷ କେଉଁଠି ରହିଗଲା । ଶୂନ୍ୟ ଏବଂ ବ୍ରହ୍ମ କେବଳ ଧାଡ଼ିରେ ଧାଡ଼ିରେ ଦୁଇଟି ବାଚକ ଶବ୍ଦ ମାତ୍ର; କିନ୍ତୁ ଉଭୟେ ଯେ ପରମବର୍ତ୍ତୁଳ ଏବଂ ଅଖଣ୍ଡ ମଣ୍ଡଳାକାର, ଏ ବିଷୟରେ ଅତତ୍ତ୍ୱବିତ୍‌ଙ୍କର ଅନ୍ତତଃ ସନ୍ଦେହ କରିବାର ନାହିଁ; କାରଣ ଶାସ୍ତ୍ର ସେପରି କହୁଛନ୍ତି । ଯଦି ଆପଣ ତତ୍ତ୍ୱବିତ୍ ହେବାକୁ ଚାହାନ୍ତି ଏବଂ ଅଧିକ ଶାସ୍ତ୍ର ହେବାକୁ ଚାହାନ୍ତି, ଅନ୍ତତଃ ଚୌରାଶୀଟି ଜନ୍ମ ପର୍ଯ୍ୟନ୍ତ ଆପଣଙ୍କୁ ନିୟୁତ କଳ୍ପିତ ଅଗାଧ ଶାସ୍ତ୍ର ସମୁଦ୍ର ଗର୍ଜୁଛନ୍ତି । ଆପଣ ବୁଡ଼ା ମାରନ୍ତୁ । ଆମେ ସମସ୍ତେ 'ହୀନବଳ' ତଟସ୍ଥ ହୋଇ ଅପେକ୍ଷା କଲୁ ଆପଣଙ୍କର ମଣିମାଣିକ୍ୟର ସମ୍ଭାରକୁ ।

ଆମ ମତରେ କିନ୍ତୁ ଯେଉଁ ମହାପୁରୁଷ—ସେ ଆରବର ହୁଅନ୍ତୁ ବା ଭାରତର ହୁଅନ୍ତୁ—ପ୍ରଥମେ ଏ ସଂଖ୍ୟାରୂପକ ମନ୍ତ୍ର ଦର୍ଶନ କରିଥିଲେ, ସେ ପରମ ସତ୍ୟଦ୍ରଷ୍ଟା ଋଷି ଏବଂ ଯଦି ସେ ହିଁ ଗାଣିତିକ 'ଶୂନ'ର ମଧ୍ୟ ପ୍ରଥମ ଦ୍ରଷ୍ଟା, ତା'ହେଲେ ତାଙ୍କୁ ସମଗ୍ର ମାନବ ଜାତିର ଅକୁଣ୍ଠିତ କୃତଜ୍ଞତା ଜ୍ଞାପନ କରାଯାଉ । ଏଇ ବର୍ତ୍ତୁଳ ରେଖାଙ୍କିତ ସତ୍ୟ ହିଁ ଧର୍ମ ଦର୍ଶନ ଓ ବିଜ୍ଞାନର ମୂଳପିଣ୍ଡ, ପୂର୍ଣ୍ଣତା ଏବଂ ଶୂନ୍ୟତାର ଅବିଭାଜ୍ୟ ପ୍ରତୀକ । ଏଥିର ଅବୟବ ନାହିଁ, ବକ୍ରତା ନାହିଁ, ଋଜୁ ସୀମା ମଧ୍ୟ ନାହିଁ । ଏହା ଏକ ଅତଳ ବିବରର ଦ୍ୱାର ଚିହ୍ନ । ଏହା ହିଁ ନିତ୍ୟବର୍ତ୍ତମାନର ତୋରଣ । ଏଇ ବାଟେ ଭବିଷ୍ୟତ ଅତୀତ ଗର୍ଭରେ ଅନ୍ତର୍ଦ୍ଧାନ ହୋଇଯାଏ, ଅସମ୍ଭୂତ ସମ୍ଭୂତିରେ ରୂପାୟିତ ହୁଏ । ସମଗ୍ର ପ୍ରବାହର ଅବସାନ ପରେ ଏ ବର୍ତ୍ତୁଳ ପରିଧିର ଅଦୃଶ୍ୟ କେନ୍ଦ୍ରରୁ ସୃଷ୍ଟି ସୀମା ପର୍ଯ୍ୟନ୍ତ ଗୋଟିଏ ନିସ୍ତରଙ୍ଗ ନିରଞ୍ଜନ ଏକକ ସତ୍ତା ନିଷ୍କମ୍ପ ବିରାଜିତ ହୁଏ ।

Digitized by srujanika@gmail.com

ଆପଣ ଏଇଟିକୁ ବ୍ରହ୍ମ କହିବାକୁ ଭାରି ଆଗ୍ରହୀ ଥିଲା ପରି ଜଣା ପଡ଼ୁଛନ୍ତି ! ଆମେ ତାକୁ କିନ୍ତୁ ଶୂନ୍ୟ କହିଦେବା ମାତ୍ରେ ଗୃହିଣୀ ଶଙ୍କରଗୃହିଣୀ କାନ୍ଧରେ ଠେଙ୍ଗା ପକେଇ ଖେପି ଆସିବେ ଯେମିତି ବାହାରିଥିଲେ ତାଙ୍କ ଆତ୍ମଗୁରୁ ସେଇ ଶୂନ୍ୟକୁ ଗୋଟେଇ ପୋଟେଇ ହିମାଳୟର ଆର ପାରିକୁ ଟେକି ଗଡ଼େଇଦେବା ପାଇଁ । ଆମର କିଛି ଯାଏ ଆସେ ନାହିଁ । ଆପଣ ଯାହା କହିଲେ ମଧ୍ୟ ଏବଂ ତା'ର ମଧ୍ୟ କିଛି ଯାଏ ଆସେ ନାହିଁ । ତା'ର କାରଣ ହେଲା ପୃଥିବୀକୁ କେନ୍ଦ୍ରକରି ଯେଉଁ ମିଶାଣ ଫେଡ଼ାଣ ଅଙ୍କଟି ଅବିଶ୍ୱାସ୍ୟ ଶାନ୍ତିପାଠରୂପେ ଗୃହୀତ ହୋଇଆସିଛି ତାହା ଶୂନ ପାଇଁ ମଧ୍ୟ ସମାନ ମାତ୍ରାରେ ସମ୍ଭବ । ଶୂନରୁ ଶୂନ ଆଦାୟ କରି ନେଲେ ଶୂନ ହିଁ ଅବଶେଷ ରହେ । ଆଶା କରାଯାଉ ଯେ ବ୍ରହ୍ମକୁ ଜାଣିଥିବା ଅବଧାନକୁଳ ଏଣିକି ପ୍ରକୃତ ଅଧିକାରୀ ଦେଖି ପରମ ଶୂନପାଇଁ ଆଗ୍ରହ ସୃଷ୍ଟି କରାଇବେ ଏବଂ ଅଙ୍କରେ ସର୍ବାଧିକ ଶୂନ ଫସଲ ଉଠାଇଥିବା ଶିଷ୍ୟମଣିଙ୍କୁ ନିର୍ବୋଧ ଚତୁଷ୍ପଦ କହି ଅପମାନ ନ କରିବେ ।

---

Digitized by srujanika@gmail.com

# ଦର୍ପଣ

ଏକଦା ଚୀନ ଦେଶର ଜଣେ ବୌଦ୍ଧ ସନ୍ନ୍ୟାସୀ ଗୋଟିଏ ଅଦ୍ଭୁତ ବସ୍ତୁ ଆବିଷ୍କାର କରି ଦେଖିଲେ ଯେ, ସେଥିରେ ମୁଣ୍ଡିତ ମସ୍ତକ ଗୋଟିଏ ଜୀବନ୍ତ ଆତ୍ମା ଆବଦ୍ଧ ରହିଛି । ବହୁବାର ସେଇ ଆତ୍ମାଟିକୁ ସେଥିରେ ଦେଖିସାରିବା ପରେ, ସେ ରକ୍ଷାକବଚ ରୂପେ ତାଙ୍କ ଶିଷ୍ୟଙ୍କୁ ତାହା ଦାନ କରିଦେଲେ । ତାଙ୍କ ଶିଷ୍ୟ କିନ୍ତୁ ସେଥିରେ ନିଜ ମୃତ ପିତାଙ୍କୁ ଆବିଷ୍କାର କଲେ ଏବଂ ପରମ ବିସ୍ମୟରେ ଲୁଚି ଲୁଚି ତାଙ୍କୁ ଦେଖିବାକୁ ଲଗିଲେ । ତାଙ୍କ ଆଚରଣରେ ସନ୍ଦେହ ପ୍ରକାଶ କରି ଦିନେ ତାଙ୍କ ପତ୍ନୀ ତାଙ୍କୁ ମୁଷ୍ଟିରୁ କାଢ଼ି ଦେଖିବାରୁ ସେଥିରେ ଗୋଟିଏ ସୁନ୍ଦରୀ ତରୁଣୀଙ୍କୁ ଅବିଷ୍କାର କଲେ । ତା'ପରେ ଖୁବ୍ ସ୍ୱାଭାବିକ ଢଙ୍ଗରେ ଦାମ୍ପତ୍ୟ କଳହ ଆରମ୍ଭ ହୋଇଗଲା । ଏବଂ ସନ୍ନ୍ୟାସୀ ସ୍ୱୟଂ ଆସି ମୀମାଂସା କରିବାକୁ ବାଧ ହେଲେ । ପରିଶେଷରେ ତିନହେଁ ମିଶି ଆବିଷ୍କାର କଲେ ଯେ ବସ୍ତୁଟି ପୃଥିବୀର ପ୍ରଥମ ଦର୍ପଣ । ସେମାନେ ପ୍ରଥମ ଥର ପାଇଁ ଆବିଷ୍କାର କଲେ ନିଜକୁ; ପ୍ରଥମ ଥର ପାଇଁ କୌଣସି ପ୍ରତିବିମ୍ବକୁ ନିଜର ବୋଲି ଜାଣିବାର ଏକ ପ୍ରକାର ଗଭୀର ବିସ୍ମୟ ଏବଂ ଆନନ୍ଦର ଅନୁଭୂତି ସେମାନେ ଲାଭକଲେ । ସେହି ପ୍ରକାର କୌଣସି ପ୍ରଥମ ବିସ୍ମୟରେ ନାର୍‌ସିସସ୍ ଜଳ ଭିତରେ ନିଜର ପ୍ରତିବିମ୍ବକୁ ଦେଖି ସେଇଠାରୁ ଆଉ ଘୁଞ୍ଚିପାରି ନ ଥିବ । ସେ ଜାଣି ନ ଥିଲା ଯେ ତାର ରୂପ-ସୌନ୍ଦର୍ଯ୍ୟ ଏତେ ଦୂର ଅନୁପେକ୍ଷ୍ୟ ଏବେ ମଧ କିଶୋର ପ୍ରାଣର ପ୍ରଥମ ସଚେତନ—ତା' ଭିତରେ ନାର୍‌ସିସସ୍ ଲୁଚି ଲୁଚି ନିଜକୁ ଏତେ ପ୍ରଗାଢ଼ ମମତାରେ ଭଲପାଏ । ଭଲପାଏ ତାର ସୁଠାମ ଅଙ୍ଗ, ତାର ଗୃହାଣୀ ଏବଂ ଭ୍ରୂବିଳାସକୁ । ଏଇ ସଚେତନତା ଏବଂ ଏଇ ଭଲ ପାଇବାର ସମାନୁପାତରେ ସେ ଦର୍ପଣଟିକୁ ନିଜର ଅତି ପ୍ରିୟବସ୍ତୁରୂପେ ଗ୍ରହଣ କରିନିଏ । ତାର ଅତି ପରିଚିତ ପରିସର ଭିତରେ ସେଇ ଆଦିମ ଝରଣାର ନିଃସ୍ତରଙ୍ଗ ଜଳ ନାରସିସସ୍‌କୁ ପ୍ରତିବିମ୍ବିତ କରେ, ତାକୁ ମୁଗ୍ଧ ବିମୂଢ଼ କରେ—ବାରମ୍ବାର ତାର ଗଭୀର ସ୍ୱଚ୍ଛତା ଭିତରେ ନିଜକୁ ଆବିଷ୍କାର କରିବାକୁ ପ୍ରଲୁବ୍ଧ କରେ । ତରୁଣ ନାରସିସସ୍ ଅଭିଶପ୍ତ ଦେବ-

Digitized by srujanika@gmail.com

ଶିଶୁପରି ଏଇ କୁହୁକ ରାଜ୍ୟରେ ବନ୍ଦୀ ହୋଇଯାଏ; କିନ୍ତୁ ମନେ ମନେ ଭାବୁଥାଏ ସେ ସେ ସ୍ୱଚ୍ଛ ସ୍ଫଟିକ ରାଜ୍ୟଟିଯାକ କେବଳ ତାହାରି, ସେଇଠି ଆଉ କାହା ପାଇଁ ସ୍ଥାନ ନାହିଁ । ଦର୍ପଣ ତ ତାର ପ୍ରଥମ ପ୍ରିୟା; ତା' ସହିତ ତାର ଆଦ୍ୟ ପ୍ରଣୟ । ମୃଗନାଭି ଏଇଠି ତାର କସ୍ତୂରିକାର ଗନ୍ଧ ପାଇ ନାକପୁଡ଼ା ଫୁଲେଇ ପ୍ରଥମ ହେମନ୍ତର ଶୀତଳ ଜହ୍ନକୁ ଅନାଏ । ପବନର ଆମନ୍ତ୍ରଣରେ ଚହଟିଯାଏ ବନରୁ ବନାନ୍ତରକୁ ।

ହଠାତ୍ କିନ୍ତୁ ଅତର୍କିତ ଭାବରେ ସେ ଆଉ ଗୋଟିଏ ସତ୍ୟ ଆବିଷ୍କାର କରି ଆଚମ୍ବିତ ହୋଇ ଅନାଏ । ଏତେ ସହସ୍ର ଥର ତାର ପ୍ରିୟ ବିମ୍ବରେଖାକୁ ଧାରଣ କରିଥିଲେ ସୁଦ୍ଧା ଦର୍ପଣଟି ସତେ କେଡ଼େ ନିରାସକ୍ତ ! ଏତେ ତାରୁଣ୍ୟ, ଏତେ ତରଳ ସ୍ୱପ୍ନର ଗାରେ ମଧ୍ୟ ସେ ଗ୍ରହଣ କରେ ନାହିଁ । ଅସଂଖ୍ୟ ତାରା ଗଙ୍ଗଶିଉଳି ପରି ଫୁଟନ୍ତି ଏବଂ ଝରିଯାଆନ୍ତି । ବିଭିନ୍ନ ପକ୍ଷୀ ଅସଂଖ୍ୟ ରଙ୍ଗର ଡେଣା ତୋଳି ସବୁଜ ଦିଗନ୍ତରେ ଲୁଚି ଯାଆନ୍ତି—କିନ୍ତୁ ବିସ୍ତୀର୍ଣ୍ଣ ଆକାଶରେ ଗୋଟିଏ ହେଲେ ରେଖାପାତ ହୁଏ ନାହିଁ, ବିନ୍ଦୁଏ ହେଲେ ରଙ୍ଗ ଲାଗେ ନାହିଁ । ସେ ସେହିପରି ଅବିକୃତ, ଅମାପ ଗଭୀରତାରେ ନୀଳ ଜର ଜର ହୋଇ ଅନେଇ ଥାଏ । ସବୁ ରଙ୍ଗର ଅବିକଳ ପ୍ରତିଫଳନ କରିବାରେ ସେଇଭଳି ଦର୍ପଣଟିର କାର୍ପଣ୍ୟ ନାହିଁ; କିନ୍ତୁ ତାକୁ ଗ୍ରହଣକରିବା ତାର ଧର୍ମ ନୁହେଁ । ସମସ୍ତେ ତା ଭିତରକୁ ଆସିପାରନ୍ତି, ତାକୁ ଅଧିକାର କରିପାରନ୍ତି, ତାକୁ ନିଜର କରିପାରନ୍ତି । ସେ କିନ୍ତୁ କାହାକୁ ନିଜର କରିପାରେ ନାହିଁ । କାହାକୁ ଅଧିକାର କରେ ନାହିଁ, କାହା ଭିତରକୁ ପ୍ରବେଶ କରିପାରେ ନାହିଁ । ଅକଳନୀୟ ତା'ର ଗଭୀରତା । ସେ ଅନନ୍ତଗର୍ଭ । ସମସ୍ତଙ୍କୁ ଧାରଣକରିବା ପରେ ମଧ୍ୟ ତାର ଅନନ୍ତ ସମ୍ଭାବନାକୁ ଅକ୍ଷୁଣ୍ଣ ରଖିପାରେ । ତରୁଣ ନାରସିସସ୍ ଦୀର୍ଘ ନିଃଶ୍ୱାସଟିଏ ମାରି ମୁହଁ ଫେରେଇ ଆଣେ—ତାର ପ୍ରଥମ ପ୍ରଣୟରେ ସେ ମମତାର ପ୍ରତିଦାନ ନ ପାଇ ହତାଶ ହୋଇପଡ଼େ । ଗୋଟିଏ ନିଃଶ୍ୱାସରେ ଝରିଯାଏ ତା'ର ତାରୁଣ୍ୟର ସମଗ୍ର ପୁଷ୍ପଭାର—ତା'ର ଭୂରୁ ଯୋଡ଼ିକ ନଇଁଯାଏ ଥୋକା ଥୋକା ବରଫର ଓଜନରେ ।

ସ୍ୱା' ପରେ ମଧ୍ୟ ସେ ପୁଣି ଥରେ ଆଖି ଖୋଲି ଅନାଏ । ପରିଚିତ ବିମ୍ବଟି ମଧ୍ୟ ସେ ଘରକୋଣିଆ ବାତାୟନରୁ ତାକୁ ଅନାଏ । ତା' ଭୂରୁ ଉପରେ ମଧ୍ୟ ଅନେକ ଓଜନ । ଆଖି ଯୋଡ଼ିକରେ କେଜାଣି କେତେ ଗଭୀରତା । ଏଇ ଚୁପଟିକୁ

Digitized by srujanika@gmail.com

ବାରମ୍ବାର ଦେଖି ଦେଖି ସେ ଶିହରି ଯାଇଥାଏ । ଭାବୁଥାଏ ଯେ ସେଇଟା ସେ, ହଠାତ୍ କିନ୍ତୁ ସେ ନିଜ ଶବ୍ଦ ଶୁଣି ନିଜେ ସ୍ତବ୍ଧ ଚକିତ ହୋଇଯାଏ । "ଦର୍ପଣ ଭିତରେ ଯାହା ଦିଶୁଛି, ସେଇଟା ମୋର ପ୍ରତିବିମ୍ବ—ମୁଁ ତ ଏ ପାଖେ ।" ଅଦୃଶ୍ୟ ବ୍ୟବଧାନଟି ହଠାତ୍ ଗୋଟିଏ ରୁଦ୍ଧ ବାଷ୍ପର କାନ୍ଥପରି ମଝିରେ ଫୁଲି-ଉଠେ ; ତା'ର ଆଖି ଯୋଡ଼ାକ ଆହୁରି ଖୋଲିଯାଏ; ଭୂରୁ ଆହୁରି ନଇଁ ଆସେ । ଏଥର ସେ ଆଉ ସେଇ ବିମ୍ବଟିକୁ ପରିଚିତ ବୋଲି ଭାବିପାରେ ନାହିଁ । କୌଣସି ଦୂରାଗତ ଅଚିହ୍ନା କେହି ଜଣେ ହୁଏ ତ । ସେ ତା ଆଖି ଭିତରକୁ ଅନାଏ । ଆଖିର ଡୋଳାଯୋଡ଼ିକ କାଚକେନ୍ଦ୍ର ପାଣିରେ ଭରପୂର ଦୁଇଟି ଅମାପ ଗଭୀରର ବାର୍ତ୍ତି । ତା' ଭିତରେ କିଛି ସେ କଳିପାରେ ନାହିଁ । ସେଇ ବିମ୍ବଟିକୁ ସେ କେବେ ଛୁଇଁପାରି ନାହିଁ । କେବଳ ସେଇ କୁହୁକ ରେଖାର ଏପାଖେ ଆଉ ଗୋଟିଏ ବିମ୍ବକୁ ନେଇ ସେ ଯାହା କିଛି କରିଛି, ତାର ଅବିକଳ ନକଲ ଫୁଟି ଉଠିଛି ରେଖାର ସେପଟେ । ସେ ବିସ୍ମୃୟରେ ଗାଲରେ, ମୁହଁରେ, ନାକରେ ହାତ ବୁଲେଇ ଦର୍ପଣଟିକୁ ଆଖିବୁଜି ଲେଉଟେଇ ଦିଏ ।

ଆଖି ବୁଜିଦେବା କିନ୍ତୁ ଘୋର ବିପଦ । କାରଣ ଭିତରେ ଦିଶିଯାଏ ବିମ୍ବହୀନ ଶୂନ୍ୟ ଦର୍ପଣ । କେବଳ ଗୋଟାଏ ପରମ ନିରାସକ୍ତ ରଙ୍ଗ ସ୍ୱାଦ-ସ୍ପର୍ଶ-ଗନ୍ଧହୀନ ସ୍ୱଚ୍ଛତା, ସୃଷ୍ଟିର ପ୍ରାରମ୍ଭିକ ଅନସ୍ତିତ୍ୱ । ମହାକାଶରେ ଗଳିପଡ଼େ ଗୋଟିଏ ଚେତନାର ବିନ୍ଦୁ । ଅନନ୍ତ ବ୍ୟାପ୍ତି ଭିତରେ ସେ ଥଳକୂଳ ପାଏ ନାହିଁ । ଆକ୍ରାନ୍ତ ହୋଇ ଗୃହଆଡ଼କୁ ଗୁଡ଼ାଏ ପହଁରିଯାଏ, ଜଣାପଡ଼େ ନାହିଁ, ସେ ପହଁରୁଛି ନା ସେମିତି ଭାବୁଛି କେବଳ । କାରଣ ଗତି ଆପେକ୍ଷିକ । ଶୂନ୍ୟ ପ୍ରଦେଶରେ ସ୍ଥାନ କାଳର ଅଭାବ ହେତୁ ଗତି ଏକ ପ୍ରହେଳିକା ମାତ୍ର । ସେ ଆଖି ଖୋଲି ମିଟି ମିଟି ଅନାଏ । ପରିଚିତ ପୃଥିବୀ, ଅସଂଖ୍ୟ ବିମ୍ବ ରେଖାରେ ତାକୁ ପୁରୁଣା ଦୋସ୍ତିରେ ଡାକେ । ସେ ଦେଖେ ଯେ ତା'ର ସ୍ମୃତିରେଖା ସହିତ ଏ ବିମ୍ବରେଖା ଖୁବ୍ ମିଶୁଛି··· ଯେଉଁଠି ସେ ପାହାଡ଼ ଦେଖିଥିଲି, ସେଇଠି ସେଇ ବସ୍ତୁ ଦିଶୁଛି । ଯେଉଁଠି ଝରଣା ଦେଖିଥିଲି ସେଇଠି ସେ ରହିଛି; କିନ୍ତୁ ବୁଝିପାରେ ନାହିଁ ଦର୍ପଣର ବାଡ଼ଟି କେଉଁଠି ? ବିମ୍ବ କିଏ ଏବଂ ପ୍ରତିବିମ୍ବ କିଏ ? କିଏ ପ୍ରଥମେ ଚହଲିଲେ ଆରଟି ତାକୁ ଅବିକଳ ନକଲ କରେ ? ପୁଣି ଏ ଯେଉଁ ଅନନ୍ତ ରୂପ ଦିଶୁଛି ସେ କଣ ସେଇ ଗୋଟିଏ ମାତ୍ର ଦ୍ରଷ୍ଟାର ପ୍ରତିବିମ୍ବ ? ପରିଚିତକୁ କେନ୍ଦ୍ରକରି ଏପରି ଗୁଡ଼ିଏ ଅପରିଚିତ ଚିନ୍ତା ତାର ଦିଗ୍‌ବଳୟକୁ କ୍ରମଶଃ ସଙ୍କୁଚିତ କରିଯାଏ ।

Digitized by srujanika@gmail.com

ଅପରିଚିତର ଏଭଳି ସଂଘାତ ହେଲେ ଅନେକ ସମୟରେ ଲୋକେ ଗୁଡ଼ାଏ ଗ୍ରନ୍ଥ ପଢ଼ନ୍ତି—ତାଙ୍କର ଆଶା ହୁଏ ଯେ କାଳେ ପ୍ଲାଟୋ ହୁଏତ ଅସଲ୍ ଜିନିଷଟି ଦେଖିଛନ୍ତି । ପ୍ଲାଟୋଙ୍କୁ ପଢ଼ୁ ପଢ଼ୁ ଖୁସି ଲାଗେ ଯେ ସେ ମହୋଦୟ ଏ ଅଦୃଶ୍ୟ ଦର୍ପଣଟିକୁ ଖୁବ୍ ଦେଖିଛନ୍ତି । ସମଗ୍ର ବସ୍ତୁଜଗତକୁ ସେ କହୁଛନ୍ତି ଗୋଟିଏ ପ୍ରତିବିମ୍ବ, ସତ୍ୟର ଅବିକଳ ନକଲ୍—ସତ୍ୟର ଅନୁରୂପ ବସ୍ତୁ । କେଜାଣି ! ପ୍ଲାଟୋ କହୁଛନ୍ତି, ଏଣୁ ସନ୍ଦେହ ନ ହେବା କଥା । କିନ୍ତୁ ହୁଏ । ହୁଏ, କାରଣ ଯାହା ନିଜର ପ୍ରତିବିମ୍ବ ବୋଲି ଆମେ ଦେଖୁ ଏବଂ ବିଶ୍ୱାସ କରୁ, ତାହା କଣ ଆମର ପ୍ରକୃତ ରୂପ ଯାହା ଆନ୍ୟମାନଙ୍କୁ ଦିଶେ ? ଦର୍ପଣରେ ସବୁ ରହେ କିନ୍ତୁ ଦିଗ ବଦଳି-ଯାଏ । ଆମେ ସେଥିରେ ଦିଶୁ ବାଙ୍କିଆଁ । ସମସ୍ତେ ଖଗା; କିନ୍ତୁ ସେ ପ୍ରତିରୂପଟି ଏବେ ପରିଚିତ ଯେ ଆମେ ଅନ୍ୟମାନଙ୍କୁ ଆଉ କିଛି ଦିଶୁଥାଇପାରୁ ବୋଲି ମଧ୍ୟ ବିଶ୍ୱାସ ହୁଏ ନାହିଁ । ଏଣୁ ପ୍ଲାଟୋ ମହାଶୟ ଏ ସମସ୍ତ ବସ୍ତୁଜଗତକୁ ପ୍ରତିବିମ୍ବ କହିବା ହୁଏତ ଭୁଲ ନୁହେଁ; କିନ୍ତୁ କେମିତି ମୋଡ଼ିଲେ ତାହା ସତ୍ୟ-ସ୍ୱରୂପ ହେବ, ସେ ବତେଇ ନାହାନ୍ତି । ଦର୍ପଣକୁ ଅନେଇ, ଭୁରୁ କୁଞ୍ଚେଇ, ବିମୂଢ଼ ଜୀବଟି ଆହୁରି ଖୋଜେ—ହୁଏତ ସତ୍ୟକୁ ଖୋଜେ; କିନ୍ତୁ ବିମ୍ବ-ପ୍ରତିବିମ୍ବ ଭିତରେ ବ୍ୟବଧାନ କେବଳ ଦୁଇଗୁଣ ଦିଶେ । ମଝିରେ କୁହୁକର ସେଇ ଅଦୃଶ୍ୟ ସ୍ଫଟିକ-ରେଖାଟି ଅମୀମାଂସିତ ରହସ୍ୟ ହୋଇ ଝୁଲି ରହେ ।

ଧେତ୍‌ତେରି ! ଏତେ ସହଜ ଜିନିଷଟାକୁ ଏମିତି କଟିମିଟିଆ କରିବାର କ'ଣ ପ୍ରୟୋଜନ ? କାଚଟି ମୂଳତଃ ସ୍ୱଚ୍ଛ । ଆଲୋକ ରଶ୍ମିକୁ ଏପାରି ସେପାରି ସେ ସିଧା ସଳଖ ବାଟ ଦେଇଦିଏ । ପଛକରେ ପାରଦ ଲଗେଇ ଦେଲେ କବାଟ ପଡ଼ିଗଲା । ଏଣିକି ତା ଦେହରେ ପିଟିହୋଇ ଆଲୋକଗୁଡ଼ିକ ଛିଟିକି ଫେରିଆସନ୍ତି । ସତେ ବା ଗୁଡ଼ାଏ ରବର ଫେଣ୍ଡୁ ! ପଳେଇବାକୁ ମଧ୍ୟ ଉପାୟ ନାହିଁ, ଆଉ ଯୋଡ଼ାଏ କାଚ ଦ୍ୱାର ମେଲି ସେମାନଙ୍କୁ ଡାକନ୍ତି । ମଣିଷର ଆଖି ଭିତରେ ଓଲଟ ପାଲଟ ହୋଇ ଅଉ ଗୋଟିଏ ପ୍ରତିବିମ୍ବ ସୃଷ୍ଟି ହୋଇଯାଏ । ସେ କିନ୍ତୁ କହେ ଯେ, ସେ ଦେଖେ— । ଆଖି ମେଲି ରଖିଲେ ଆଲୁଅ ଏମିତି ଅବଶ୍ୟ ଖେଳିବ । ଦେଖିବା ତେଣିକି ଅବଶ୍ୟମ୍ଭାବୀ । ଦରଜା ବନ୍ଦ କରିଦେଲେ ଅବଶ୍ୟ କଥା ଅଲଗା । ଅତି ସହଜ ଏ ପାଠଟିକୁ ପଦାର୍ଥ ବିଜ୍ଞାନ ଆରମ୍ଭରୁ ପିଲାଏ ବୁଝିଯାନ୍ତି । ଏଥିରେ ପୁଣି ଏତେ ଧରପଗଡ଼ କାହିଁକି ଲାଗିଛି ?

ଧରପଗଡ଼ ନ ଲାଗିବା କଥା । କେହି ମଧ୍ୟ ଚାହୁଁନାହିଁ ନିଜେ ଏ ଧରପଗଡ଼ରେ ଏମିତି ତଳ ଉପର ହେବାକୁ; କିନ୍ତୁ ପଦାର୍ଥ ବିଜ୍ଞାନ ପରୀକ୍ଷାଗାରକୁ

Digitized by srujanika@gmail.com

ଟିକିଏ ଗୋଡ଼ କାଢ଼ିଲେ ଆପେ ଆପେ ଧରପଗଡ଼ ଲାଗିଯାଉଛି । ଦର୍ପଣଟିକୁ ସିନା ମାପି ଯୋଖି କଟା ସମ୍ଭବ ହେଲା । କିନ୍ତୁ ତାର ସେ ପ୍ରତିଫଳନ ଧର୍ମଟିକୁ ବୁଝିବା ବଡ଼ କଠିନ ହୋଇଗଲା । ସେଇ ଧର୍ମରେ ଆଜି ସହସ୍ର କର୍ମ ଆମ ଗୃହଆଡ଼େ ସମ୍ପାଦିତ ହେଉଛି । ଆମେ ପରୀକ୍ଷାଗାର ଭିତରୁ ବାହାରି ଆସି ଏମିତି ବିହ୍ୱଳ ହୋଇ ଅନାଉଁ, ଦର୍ପଣ ମଧ୍ୟ ଫିଟିଆସି ଗୃହଆଡ଼େ ବୁଲି ହୋଇଯାଏ । ସବୁକୁ ଦର୍ଶନ ସେଇ ପ୍ରତିଫଳନର କଥା । ଇତିହାସ କହେ ସେ ଅତୀତର ପ୍ରତିଫଳନ । ଜ୍ୟୋତିଷ କହେ ସେ ଭବିଷ୍ୟତର । ଲକ୍ଷାଧିକ ଖବର-କାଗଜ କହନ୍ତି ସେମାନେ ବର୍ତ୍ତମାନର ପ୍ରତିବିମ୍ବ । —ଭାବ କହେ ସେ ଜ୍ଞାନକୁ ପ୍ରତିଫଳିତ କରେ, ଭାଷା କହେ ସେ ଭାବକୁ ପ୍ରତିବିମ୍ବିତ କରେ, ଶବ୍ଦ କହେ ସେ ଭାଷାକୁ ବିମ୍ବିତ କରେ ଏବଂ ଶେଷରେ ଗୁଡ଼ିଏ ବକ୍ର ଓ ଋଜୁରେଖା ଏ ସମସ୍ତଙ୍କର ଚୂଡ଼ାନ୍ତ ପ୍ରତିନିଧିତ୍ୱ କରନ୍ତି । ସେଇ ରେଖା ସମ୍ବଳିତ ପ୍ରତ୍ୟେକ ଗ୍ରନ୍ଥ ଗୋଟିଏ ଗୋଟିଏ ମୁକୁର । ସେହିପରି ବହୁ ମୁକୁର ମିଶି ଗ୍ରନ୍ଥାଗାର ନାମରେ ଗୋଟିଏ ଜାତି ବା ଗୋଷ୍ଠୀର ଶିକ୍ଷା ସଂସ୍କୃତିର ପରିସରକୁ ମୁକୁରିତ କରେ । ଲୋକସଭା, ରାଜ୍ୟସଭା, ପ୍ରାଧାନମନ୍ତ୍ରୀ, ରାଷ୍ଟ୍ରପତି ସମସ୍ତେ ପ୍ରତିନିଧିତ୍ୱ କରନ୍ତି— । ତାଙ୍କର ଭ୍ରୂକୁଞ୍ଚିତ ହେଲେ ଦେଶର ଭ୍ରୂକୁଞ୍ଚନ ହେଲା ବୋଲି ଧରିନିଆଯାଏ । ସେମାନେ ନାଚିଲେ ଦେଶ ନାଚେ । ସେମାନେ ଚିତ୍କାର କଲେ ଦେଶ ଚିତ୍କାର କରେ । ଦେଶ ନିଜେ ଗୋଟିଏ ବିରାଟ ମୁକୁର । ସେଥିରେ ଅସଂଖ୍ୟ ବସ୍ତୁ, ଅନେକ ହିମାଳୟ, ବିନ୍ଧ୍ୟାଦି ପର୍ବତ, ନଦ ନଦୀ, ବନମାଳ, ଗେଣ୍ଡା, କୋଚିଆ, ହାଣ୍ଡି, ଗଣ୍ଡାର ବଙ୍ଗଳା, ଗୁଜୁରାଟ, କାଶ୍ମୀର, ଅନେକ ଭାଷା, ସାହିତ୍ୟ, ବେଶଭୂଷା, ପରମ୍ପରା, ବେଦ, କୋରାନ୍, ବାଲିମାଟି, ରେଲପଥ ଆଦି ପ୍ରତିବିମ୍ବିତ ହୁଅନ୍ତି । ଏ ସମସ୍ତଙ୍କର ସାମୂହିକ ପ୍ରତିବିମ୍ବର ଗୋଟାଏ ନାଁ, ସେ ହେଲା ଇଣ୍ଡିଆ ଅଥବା ଭାରତ ।

ଦର୍ପଣ—ବାଉଳା ପୁଣି ଅନାଏଁ । ତାକୁ ଲାଗେ ସ୍ମୃତି ଗୋଟିଏ ଦର୍ପଣ । କାଳର ବିଭିନ୍ନ କେନ୍ଦ୍ରରେ ସେ ପ୍ରସାରିତ ହୋଇପାରେ । ଅତୀତର ବିଲୁପ୍ତ ବିମ୍ବରେଖାକୁ ମଧ୍ୟ ପ୍ରତିଫଳିତ କରିପାରେ । ବୁଦ୍ଧି ଗୋଟିଏ ଦର୍ପଣ—ସେଥିରେ ବିଭିନ୍ନ ଜ୍ଞାନ ଏକତ୍ରିତ ହୁଏ, ପ୍ରତିଫଳିତ ହୋଇ ଗୋଟିଏ ନୂତନ ସମାହାର ସୃଷ୍ଟି ହୁଏ । ଚିତ୍ରକଳା, ସ୍ଥାପତ୍ୟ, ସାହିତ୍ୟ, ଦର୍ଶନସବୁ ଗୋଟିଏ ଗୋଟିଏ ପ୍ରତିଫଳନ । କିଏ ବସ୍ତୁକୁ ତ, କିଏ ଚିନ୍ତାକୁ, କିଏ ଭାବକୁ ତ, କିଏ ଆବେଗକୁ ପ୍ରତିବିମ୍ବିତ କରନ୍ତି । ସେ ମଣିଷକୁ ଅନାଏ । ମଣିଷର ରୂପ-ରେଖାକୁ ନିର୍ବିକାର

Digitized by srujanika@gmail.com

କାଚ ଆଖିରେ ସେ ଧାରଣ କରେ, ମୁକୁରିତ କରେ, ତା'ପରେ କିନ୍ତୁ ଅନେକ ଗୋଲମାଳ ଧରିଯାଏ । ମନର ଅଦୃଶ୍ୟ କେନ୍ଦ୍ରରୁ ବିଭିନ୍ନ ରଙ୍ଗର ମେଘ ଘୋଟିଆସି ହୋଇ ଆସେ । ମଣିଷଟି ତେଣିକି ବିଭିନ୍ନ ମେଘର ଆବରଣ ଭିତରେ ବିଭିନ୍ନ ସଂଜ୍ଞାରେ ନାମିତ ହୋଇଯାଏ । ସେ ନଷ୍ଟପ୍ଲ କାଣ୍ଟୁଆ ! —ନାକ ସିଧା ଆଖି ନେଳ, ଚମତ୍କାର ରଙ୍ଗ ହାଣ୍ଡି ଦାନ୍ତରେ ଅଲତା ବୋଳାଲପରି—ବାଃ—ଡାଲହ୍ ଦ— ସେଓ, ନାସ୍ପାତି, ଅଙ୍ଗୁର—ଗଙ୍ଗ ତରଙ୍ଗିଣୀ—ଆର୍ଯ୍ୟ ସଭ୍ୟତା—ସେ ଆମର ଖୁବ୍ ନିକଟର, ମୋର···ସେହି ମୁଁ !! —କିମ୍ବା···ସେ ଫତେଇ ପିନ୍ଧିଚି, ତା'ର କଳ ଲମ୍ବା, ବାଗୁଲ ବାଳ, ସେ କାବୁଲି ପଠାଣ ! ସେ କୋରାନ ପଢ଼େ—ସେ ସୋମନାଥ ଲୁଣ୍ଠନ କରିଛି, ସେ ଚକଗାଁ, ସେ ଘୋରି, ସେ କଳାପାହାଡ଼, ସେ ୧୫୨୬, ୧୯୪୮, ୧୯୭୧ ! —ହମ୍ ନାହିଁ ଗ୍ରେଡ଼ଙ୍ଗେ···ହାଁ ହାଁ କରୁ କରୁ ଖଣ୍ଡା ଭୁଜାଲି ଚମକି ଉଠେ ! ଆଗ୍ନେୟଗିରି ଭିତରୁ ବିଭିନ୍ନ ଧାତୁ ତରଳ ବିଚିତ୍ର ରଙ୍ଗର ବାମ୍ପ ମାଡ଼ିଆସେ, ତାକୁ ରୋକି ହୁଏ ନାହିଁ । ମୁକୁର ଧର୍ମ ଭୟଙ୍କର ଭାବରେ ଜଟିଳରୁ ଜଟିଳତର ହୋଇଯାଏ । ମଣିଷ ଯହ ଯାହା ଦିଶୁଛି କେବଳ ସେତିକ ହିଁ ଦିଶନ୍ତା; ତେବେ ଅନେକ ଦୁଃସ୍ୱପ୍ନର ଭୂତ ଉଭେଇ ଯାଆନ୍ତେ । ହଲଦିଆ ଥାଳିଆ ପରି ମୁହଁରେ ଧାର ଧାର ଆଖି ଓ ନିଘଞ୍ଚ କଳା ମୁହଁରେ ଧଉଳା ଚୂନପରି ଦାନ୍ତ ସମାନ ଭାବରେ ଚମତ୍କାର ଦିଶନ୍ତେ । ପଦାର୍ଥ ବିଜ୍ଞାନର ପରୀକ୍ଷାଗାର ନିୟମରେ କେବଳ ଆଲୋକ ଶିଶୁଗୁଡ଼ିଏ ଏଠୁ ସେଠିକି କୁଦାମାରି ସମସ୍ତ ନିର୍ବସ୍ତ୍ର ଖେଳ ଖେଳି ଗୁଲିଯାଆନ୍ତେ ।

ଏ ଅଦ୍ଭୁତ ପ୍ରତିଫଳନର ଖେଳ ଭିତରେ କିନ୍ତୁ ଆଲୁଅ ନିଜେ ଦିଶେ ନାହିଁ, ଦେଖାଏ । ବିମ୍ବ ନିଜେ ଦିଶେ ନାହିଁ—ପ୍ରତିବିମ୍ବିତ ହୁଏ । ମୁକୁର ନିଜେ ଦିଶେ ନାହିଁ, କେବଳ କୁହୁକ ସୃଷ୍ଟି କରେ ! ଦ୍ରଷ୍ଟା ସ୍ୱୟଂ ସର୍ବଦା ଅଦୃଶ୍ୟ ରହିଥାଏ । ଅଦ୍ଭୁତ ଏ ଖେଳ । ଶିଖାଖଣ୍ଡିଟି ହୁଏତ ଗୋଟିଏ ଠୋସ୍ ବସ୍ତୁ । ହୋଇପାରେ ସେ ହିଁ ସତ୍ୟ ! ଆଜ୍ଞା ନା ! ତା ପାଖକୁ ଗଲେ ସେ ମଧ୍ୟ ଧୂମରୂପରେ ଚୁପ୍ ଚୁପ୍ କହେ, "ମୁଁ ପରି ଗୋଟିଏ ପ୍ରତିବିମ୍ବ—ମୁଁ ଶିଳାଭୂର ପ୍ରତିନିଧି ! ଯାହା ଦେଖୁଛ ସେଗୁଡ଼ିକ ବିଭିନ୍ନ ଗୁଣ ମାତ୍ର—ତୁମ ଆଖିକୁ ଦଉଡ଼ି ମଧ୍ୟ ସାପପରି ଦିଶିପାରେ । ତୁମେ ଏ ସମସ୍ତ ମଧ୍ୟ ଏକାଠି ଦେଖିପାରିବ ନାହିଁ । ସବୁବେଳେ ଫାଳେ ଯୋଡ଼ିଏ ମାତ୍ର ପ୍ରତିଫଳିତ ହୁଏ । ମୁଁ ସମ୍ପୂର୍ଣ୍ଣରୂପେ କ'ଣ, ତାହା ତୁମ କାଚରେ ଦିଶିବ ନାହିଁ । ମୋର ନିର୍ଗୁଣ ସତ୍ୟ ସ୍ୱରୂପ କ'ଣ—ତାହା ତୁମ ଜ୍ଞାନର ସୀମାଭିତରେ ଆସିପାରିବ ନାହିଁ ।"

Digitized by srujanika@gmail.com

ଆଉ ପାଦେ ଆଗେଇଲେ କାନରେ ଠେଙ୍ଗା ପକେଇ ଜଗଦ୍‌ଗୁରୁ ଜଗିଛନ୍ତି । କହୁଛନ୍ତି ଏ ସମସ୍ତ ବହୁଧା ବର୍ଣ୍ଣ ରୂପରେ ନାନାତ୍ୱ କେବଳ ସର୍ପ ଭ୍ରମ !! ସତ୍ୟ ଅବିଭାଜ୍ୟ, ଚିରନ୍ତନ, ଏକ ! 'ତାହା', 'ଏହା', 'ମୁଁ', 'ସେ' ଇତ୍ୟାଦିର ବ୍ୟବଧାନ କେବଳ ସେଇ ଅଦୃଶ୍ୟ ଅନବଚ୍ଛେଦ୍ୟ ମୁକୁରର କୁହୁକ । ସେ ସତ୍ୟକୁ ପ୍ରତିଫଳିତ କରେ; କିନ୍ତୁ ଦିଗ ବଦଳାଇ ଦିଏ । ଏକତ୍ୱକୁ ବହୁଗୁଣିତ କରି ଦେଖାଏ । ଯଦି ସତ୍ୟ ଦେଖିବାକୁ ଚାହଁ ନିଜେ ଦର୍ପଣ ହୋଇଯାଅ । —ସଂସାରର ବିମ୍ବରେଖା ପଡ଼ି ନିଶ୍ଚିହ୍ନ ହୋଇଯାଉ ! ନିର୍ଲିପ୍ତ ସଂଗରହିତ ହୋଇଯାଅ । ତେବେ ଗୋଟାଏ ଆଚମ୍ବିତ ମୁହୂର୍ତ୍ତରେ ତୁମ ଭିତରେ ଅନନ୍ତ ସତ୍ୟ ରୂପାୟିତ ହୋଇଯିବ ! ଦୁଇଟି ମୁକୁର ପରସ୍ପରକୁ ଅନେଇ ରହିଲେ ସେମାନଙ୍କର ବ୍ୟବଧାନ ଭିତରେ ଗୋଟାଏ ଅନନ୍ତ ପ୍ରତିଫଳନ, ସ୍ୱଚ୍ଛ ସ୍ଫଟିକର ସୀମାହୀନତା ଆସି ବିସ୍ତୃତ ହୋଇଯାଏ । —ସେଥିରେ ତରଙ୍ଗ ନାହିଁ, ରୂପରେଖ ନାହିଁ, ରଙ୍ଗ, ସ୍ୱାଦ, ଗନ୍ଧ, କିଛି ନାହିଁ !! ସେଥିରେ କମ୍ପନ ନାହିଁ—ସେ ଅନବଚ୍ଛେଦ୍ୟ, ଅନାଦି ମଧ୍ୟାନ୍ତ । ଶଙ୍କର ପଦାର୍ଥ-ବିଜ୍ଞାନର ପରୀକ୍ଷାଗାର ଭିତରେ ପିଲଙ୍କୁ ମୁକୁର ଧର୍ମର ଆଉ ଗୋଟିଏ ବ୍ୟାପ୍ତି ବୁଝେଇଦେଇ ଯାଆନ୍ତି ।

କିନ୍ତୁ ମୁକୁରରେ ଥିବା ପର୍ଯ୍ୟନ୍ତ ସତ୍ୟସ୍ୱରୂପ ଦିଶେ ନାହିଁ । —ପ୍ରତିବିମ୍ବର ରାଜ୍ୟକୁ ଥରେ ଆବିଷ୍କାର କରିଦେଲେ, ଡେଣିକ ସେଥିରେ ମନ ଲାଗେ ନାହିଁ । ମନରେ ଉଚ୍ଚାଟ ସୃଷ୍ଟି ହୁଏ—ବୁଲାପଡ଼ କେମିତି ସତ୍ୟରୂପକୁ ଥରେ ଦେଖିଦେବ । ପରକ୍ଷେତ୍ରରେ ସତ୍ୟକୁ ସେ ପ୍ରେମ କରେ, ତାକୁ ପାଇବାକୁ ସେ ବ୍ୟାକୁଳ ହୋଇଉଠେ । ଶାଳନ୍ତ୍-ବାସିନୀ ଭଦ୍ରମହିଳାଙ୍କ ଛାତ୍ର ସକଳ ତାଙ୍କୁ ଦର୍ପଣ-ବିମୁଖ କରିଦିଏ । ସେ ବୁଲିପଡ଼ନ୍ତି ସତ୍ୟର ରାଜ୍ୟକୁ । ଦର୍ପଣଟି ଚଟୁଡ଼ା ଚରୁଡ଼ା ହୋଇ ଝଡ଼ିପଡ଼େ । ଉଭେଇଯାଏ ତା'ର କୁହୁକ ! ସତ୍ୟଧର୍ମୀ ତା'ର ଚରମ ମୁହୂର୍ତ୍ତରେ ସୁନାର ଘୋଡ଼ଣୀ ତଳେ ସେଇ ଏକନିଷ୍ଠ ସତ୍ୟର 'କଲ୍ୟାଣ-ତମ' ରୂପକୁ ଦେଖେ । ମୁକୁରର ଅନୁପସ୍ଥିତିରେ ପ୍ରତିବିମ୍ବଟି ମୂଳବସ୍ତୁରେ ଲୀନ ହୋଇଯାଏ । ଖେଳ ସରିଯାଏ !! —ଏଣୁ ସେଇ ପ୍ରାଚୀନ ଚୀନ୍ ଦେଶର ବୌଦ୍ଧ ସନ୍ନ୍ୟାସୀ ମହାଶୟଙ୍କର ଆଶୀର୍ବାଦ ସ୍ୱରୂପ ଏ କୁହୁକ ଯନ୍ତ୍ରଟିକୁ ଗ୍ରହଣ କରାଯାଉ । ତାକୁ ଚକ୍ଷିମାଜ ଦେଖି ଜାଣିଲେ କେବଳ ଦାମ୍ପତ୍ୟ କଳହ କାହିଁକି, ସବୁପ୍ରକାର କଳହର ସମାଧାନ ହୋଇ ଯାଇପାରେ ।

---

Digitized by srujanika@gmail.com

# ପରିଚୟ

ସକ୍ରେଟିସ୍‌ଙ୍କର ଗୋଟିଏ ଖୋଇ ଥିଲା ଯେ, ସେ ଏଥେନ୍‌ସ ବଜାର ବାଟରେ ଠିଆହୋଇ ଅପରିଚିତ ବ୍ୟକ୍ତିଟିକୁ ପାଖକୁ ଡାକିବେ ଏବଂ ତାଙ୍କୁ ଗୁଡ଼ିଏ ପ୍ରଶ୍ନ ପଚାରିବେ । ସେ ବ୍ୟକ୍ତିଟି ପ୍ରଥମେ ହୁଏତ' ତାଙ୍କୁ ବୋକା ଠଉରେଇ ଟିକେ ହସୁଥିଲା; କିନ୍ତୁ ଗ୍ରୀକ୍ ଲୋକଗୁଡ଼ିକ ତ ସ୍ୱାଭାବିକ ଭାରି ଗପୁଡ଼ି । ଏଣୁ ସେ ଭୁଲିପଡ଼ି ତାଙ୍କୁ ଉତ୍ତରଦେବା ଆରମ୍ଭ କରିଦେଉଥିଲା । ଏଣିକି ସକ୍ରେଟିସ୍‌ଙ୍କ ପାଳି । ଆଖି କୋଣରୁ ଝିଲ୍ ଝିଲ୍ ମୁରୁକି ମାରି ଲୋକଟି ଆଗରେ ସେଇ ଗୋ'ଟିଏ ମାତ୍ର ଅବିଚଳିତ ପ୍ରଶ୍ନଟିକୁ ଧରି ରଖୁଥିଲେ । ବ୍ୟକ୍ତିଟି ତାର ଉତ୍ତର ଦେଇ ଦେଇ କ୍ଳାନ୍ତ ହେଲାପରେ ଦେଖୁଥିଲା ଯେ ପ୍ରଶ୍ନ ପୂର୍ବପରି ଏକ ଅମୀମାଂସିତ ବକ୍ରରେଖାଟିଏ ଏବଂ ସକ୍ରେଟିସ୍‌ଙ୍କର ଅସୁନ୍ଦର ମୁହଁଟି ମଧ୍ୟ ପୂର୍ବପରି କୁଞ୍ଚୁକୁଞ୍ଚିଆ ହସଟିଏ । ଏବପରି ହୋଇଥିଲେ ସକ୍ରେଟିସ୍ ମହାଶୟ କିଛି ବୋଲୁଅ ମାଡ଼ ଖାଇଥା'ନ୍ତେ ନିଶ୍ଚୟ; କିନ୍ତୁ ସେ ସମୟର ଏଥେନ୍‌ସ ନାଗରିକ ମଧ୍ୟ ପ୍ରବଳ ବିରକ୍ତି ଏବଂ କ୍ରୋଧରେ ତାଙ୍କୁ ଖୁବ୍ ଗୋଟାଏ ଶୋଧାଶୋଧି ଯେ ନ କରିଥିବ ଏପରି ନୁହେଁ—ତଥାପି ସକ୍ରେଟିସ୍ ଯେଉଁ ପ୍ରଶ୍ନ ପଚାରନ୍ତି ଆବହମାନ କାଳରୁ ଏପର୍ଯ୍ୟନ୍ତ ପ୍ରଶ୍ନଟି ଅତି ସରଳ, ସହଜ, ନିହାତି ମୌଳିକ ଶିଷ୍ଟାଚାରର ପ୍ରଶ୍ନଟିଏ । ତା' ହେଲା "ଆପଣ କିଏ ?" ସେଭଳି ପଚାରିବା ମଧ୍ୟ କୌଣସି ନୁହେଁ, ଆମେ ଦୈନିକ ବହୁବାର ଏହା ପଚାରୁ । କିନ୍ତୁ ଆପଣଙ୍କର ପ୍ରଖର ବିଂଶ ଶତାବ୍ଦୀ ବୁଦ୍ଧି ଖଟେଇ ଏବେ ବି ଯା'ର ଉତ୍ତରଦେବାକୁ ଚେଷ୍ଟା କରନ୍ତୁ ନା ଦେଖି ! ଆପଣ ଅବଶ୍ୟ ହାରିଯିବେ । କାରଣ ଏଇଟି ଯେତେ ନିରୀହ ଦେଖାଯାଉଛି, ପ୍ରକୃତରେ ସେ ତାହା ନୁହେଁ । 'ଅଲିସ୍'ର ବିସ୍ମୟ ରାଜ୍ୟରେ ଖରଗୋସ୍‌ର ଗର୍ତ୍ତପରି ଏହା ପୃଥିବୀର ଏପାଖ ସେପାଖ ଫୁଟି ବାହାରିଛି । ଯଦି ଖରଗୋସ୍ ପଛରେ ଥରେ ଆପଣ ପଶିଗଲେ, କୁମାରୀ ଆଲିସ୍ ପରି ଆପଣ ମଧ୍ୟ ଖୁବ୍ ଚମକିବେ । ଅନେକ ଅଦ୍ଭୁତ ରାଜ୍ୟରେ ବୁଲିବେ ଏବଂ କ୍ଳାନ୍ତହୋଇ ସେଇବାଟେ ପୁଣି ଫେରିଆସିବେ । ତା'ର ଅବିକୃତ ବିବର ଦ୍ୱାରରେ ଖରଗୋସ୍‌ଟି କିନ୍ତୁ ସେଇଭଳି ଅପେକ୍ଷା କରିବ

Digitized by srujanika@gmail.com

ଆଜି ଜଣଙ୍କୁ, ଯେପରି ଏବେ ବି ଅପେକ୍ଷା କରି ରହିଛି ସକ୍ରେଟିସ୍‌ଙ୍କ ପ୍ରଶ୍ନ "ଆପଣ କିଏ ?"

ଏଥେନ୍‌ସର ନାଗରିକଙ୍କ ପରି ଆମ ଦେଶର ଯୁବକଗୋଷ୍ଠୀ ତ ଆଉ ଓଲ୍ ନୁହଁନ୍ତି ବା ଗପୁଡ଼ି ନୁହଁନ୍ତି । ସେମାନେ ଖୁବ୍ ଚାଲାକ୍, ଖୁବ୍ ନିର୍ଭୀକ । ଏଣୁ ଖୁବ୍ ଆଧୁନିକ । ସେଥିପାଇଁ ସେମାନଙ୍କ କାଲି ଟେରି ଲମ୍ବା, ସେମାନଙ୍କ ନିଶ ହାଲକ ଅସ୍ଥାନରେ ମଇଁଷି ଶିଙ୍ଘ ପରି ବେଶ୍ ପୁଷ୍ଟଳ ଓ ବଙ୍କା । ସେମାନେ ଶିଷ୍ଟାଚାରକୁ ଦୁର୍ବଳତା ବୋଲି ଭାବନ୍ତି । ଏଣୁ ଏ ମରହଟ୍ଟିଆ ପ୍ରଶ୍ନକୁ ସେମାନେ କ'ଣ ଉତ୍ତର ଦିଅନ୍ତି ଜାଣନ୍ତି ? କହନ୍ତି—"ଆମେ ଯିଏ ମନ ସିଏ ହେଲେ ତୋ' ବାପ୍‌ର କ'ଣ ଗଲ୍ ବେ !" ବା "ତୁଇଁ‌ଟା କିଏ ଆମକୁ ପଚାରିବାକୁ ?" କିମ୍ବା ଖୁବ୍ କ୍ଲାନ୍ତ ସ୍ୱରରେ ଗମ୍ଭୀର ମୁଦ୍ରାରେ ଗୋଟିଏ ପ୍ରତି ପ୍ରଶ୍ନ "କାହିଁକି ?" ଏତିକିରେ ଏ ପୁରୁଷ ପୋତଙ୍କ ସାମନାରୁ ସକ୍ରେଟିସ୍ ତାଙ୍କ ପ୍ରଶ୍ନ ପେଡ଼ି ଗୋଟେଇ ପକେଇବା କଥା । କିନ୍ତୁ ସେ ପୁରୁଣା ମାର୍ବଲ୍ ମୂର୍ତ୍ତିଟିଏ ପରି ଏଥେନ୍‌ସ ବଜାରର ପଥର ଖୁଣ୍ଟିକୁ ଆଉଜି ଠିଆ ରହିଯା'ନ୍ତି । ପ୍ରଶ୍ନଟି ମଧ୍ୟ କାଲୁଆ ହୋଇ ପଥର ପାଲଟିଯାଏ । ଧୂଳି ଝଡ଼ପରେ ପୁଣି ଆଖିରେ ଆଖିଏ ଲେଖା ଆତ୍ମୀୟତା, ଆନ୍ତରିକତା ନେଇ ସେ ମୁରୁକି ମାରି ପଚାରନ୍ତି "ଆପଣ କିଏ ?"

ଆଚ୍ଛା କଥା, ଏମିତି ଟିକଲେଇ ପଚାରିବା ଅର୍ଥ କ'ଣ, ଯା'ର କ'ଣ ଉତ୍ତର ନାହିଁ । ମୁଁ ଜାଣେ ଯଦି ମୁଁ ମୋ ନାମୋଚ୍ଚାରଣ କରେ ସେ କହିବେ···ଏହା ଗୋଟିଏ ପ୍ରାଦେଶିକ ବର୍ଣ୍ଣମାଳାର କେତୋଟି ଅକ୍ଷର ଏବଂ ଯା' ସହିତ ସ୍ୱର ସଂଯୋଗ କଲେ ଯାହା ହୁଏ, ତାହା ମୁଁ ନୁହେଁ । ତା'ପରେ ଅମୁକଙ୍କ ପୁଅ ସମୁକଙ୍କ ନାତି, ଗମୁକଙ୍କ ଜୋଇଁ—ବା ମୁକାମେ ରାମଚନ୍ଦ୍ରପୁର, ଜିଲ୍ଲା ପୁରୀ, ଜମ୍ବୁଦ୍ୱୀପେ ଭରତ ଖଣ୍ଡେ ଇତ୍ୟାଦି ଇତିହାସ, ଭୂଗୋଳରେ ବି ସେ ସନ୍ତୁଷ୍ଟ ହେବେ ନାହିଁ । ଦେଶ, କାଳ, ନାମ, ରୂପକୁ ଛାଡ଼ିଦେଲେ ବାକି ଯାହା ରହିଲା ସେଇଟା କୁଆଡ଼େ ସତ୍ୟ ଏବଂ ସେଇ ବିଚିତ୍ର ବସ୍ତୁଟିକୁ ଆମ୍ଭେ ଏ ଯାଏଁ ସମଝି ନାହୁଁ । ଅତଏବ ଏ ସହଜ ସରଳ ପୁରୁଣା ପ୍ରଶ୍ନଟିର ଉତ୍ତର ଦେବା ମୋ ବୁଦ୍ଧି ଏବଂ ଅନୁଭବରେ ସମ୍ଭବ ନୁହେଁ । ସେହିପରି ଆଉ କାହାପାଇଁ ମଧ୍ୟ ସମ୍ଭବ ନୁହେଁ; କିନ୍ତୁ ସକ୍ରେଟିସ୍ ଏକ ଜାତିବାଚକ ବିଶେଷ୍ୟ । ସେମାନେ ସବୁକାଳେ ସବୁ ଦେଶରେ ଜଣା ଅଧିକେ ଥାନ୍ତି ଏବଂ ଏ ପ୍ରଶ୍ନ ତାଙ୍କ ଚାଖରେ ଯାଇ ହାବୁଡ଼େ । ସେମାନେ ତାକୁ ଅନେକ ପ୍ରକାର ଉତ୍ତର ଦେଇ ଘୋଡ଼େଇ ପକାନ୍ତି । ସେମାନଙ୍କର ଜୁଆରିଆ ଲହଡ଼ି

Digitized by srujanika@gmail.com

ତଳେ ସେ କଣ୍ଟ ସମସ୍ତ ବୁଡ଼ଯାଏ ନଷ୍ଟପ୍ରାୟ; କିନ୍ତୁ ନିଦ୍ରା ଘୁଞ୍ଚଗଲେ ପୁଣି ସେମିତି ମୁଚୁଳିମାତ୍ର ଅବକୃତ ଅନେଇ ରହେ । ମାନବ ବୁଦ୍ଧିକୁ ଉତ୍ତେଜିତ, ଉତ୍‌କ୍ଷିପ୍ତ କରିବା, ତାକୁ ଶାଣିତ ଜାଗ୍ରତ କରି ରଖିବା ସତେ ସେମିତି ଏ ପ୍ରଶ୍ନର ଚିରନ୍ତନ କାମ ।

ସେ ଭିତରୁ ଜଣେ କହନ୍ତି ମୁଁ ଏକ ଆକସ୍ମିକ ଘଟଣା, ମୋର ଜନ୍ମ ହେବା କିମ୍ବା ନହେବା ସମାନ ଭାବରେ ଆକସ୍ମିକ । କିଛି ଜୈବିକ କ୍ଷୁଧା, କିଛି ପୈତୃକ ରୁଚି ଏବଂ ପିତାମହୀ ଚେହେରା ନେଇ ମୁଁ ସଂସାରରେ ଭାଳପଡ଼ି ମେଲିଯାଏ । ଏ ନିଇ ପ୍ରାପ୍ତ ଛିଣ୍ଡେ ନାହିଁ, ଗୃଲିଥାଏ ଅନନ୍ତକାଳ ପର୍ଯ୍ୟନ୍ତ । ମୁଁ କିନ୍ତୁ ଏ ପ୍ରବାହର ଗୋଟିଏ ମାତ୍ର ବିନ୍ଦୁ । କୌଣସି ଅଜ୍ଞାତ ଅନ୍ଧାରରୁ ପୁଣି ସେଇ ବା ତଦ୍‌ଭିନ୍ନ ଗୋଟିଏ ଅଜ୍ଞାତ ଅନ୍ଧାରରେ ମିଳେଇଯିବା ମୋର ଜୀବନ । ମୋତେ ସାମୟିକ ବ୍ୟବହାର କରନ୍ତିଆନ୍ତି ବଂଶରକ୍ଷା କରିବାକୁ । ବିଭିନ୍ନ କ୍ଷୁଧାରେ ସମିଧ ଯୋଗେଇ ମୁଁ ନିଜେ ସେଥିରେ ଦଗ୍‌ଧ ହୋଇଯାଏ, ଜୀର୍ଣ୍ଣ ହୋଇଯାଏ, ଏ କ୍ରମାନ୍ୱୟ ଜୀର୍ଣ୍ଣ ହେବାର ଧାରା ହିଁ ଜୀବନ ।

ଆଉ ଜଣେ ସ୍ୱରମିଳେଇ କହନ୍ତି ଯେ, ସେସବୁ ଠିକ୍ । ମଣିଷ କହିଲେ ଯେଉଁ ଜନ୍ତୁଟିକୁ ବୁଝାଏ, ସେ ମାତ୍ର ଦଶ ପନ୍ଦର ହଜାର ବର୍ଷ ହେଲି ଏ ପୃଥିବୀରେ ଦେଖା ଦେଉଛି । ତା' ପୂର୍ବରୁ ଥିଲେ ମାଙ୍କଡ଼ ଏବଂ ସେମାନଙ୍କ ପୂର୍ବରୁ ଅନ୍ୟାନ୍ୟ ଚତୁଷ୍ପଦ । ଏଇଭଳି ପଛେଇ ପଛେଇ ଗଲେ ଶେଷକୁ ଗୋଟିଏ ଉତ୍ତପ୍ତ ଜଡ଼ପିଣ୍ଡ ମାତ୍ର ଥିଲି, ଯାହାକୁ ଆମେ ବର୍ତ୍ତମାନ ପୃଥିବୀ କହୁଛୁ । ସେ ସମୟରେ ଜୀବନର କୌଣସି ଚିହ୍ନ ନ ଥିଲି; କିନ୍ତୁ କେମିତି ଆସିଲି ବା କେବେ ଆସିଲି ତା' କହିହେବ ନାହିଁ । ଏ ଧାରାରେ ମଣିଷ ଅତି ଅର୍ବାଚୀନ ଗୋଟିଏ ଜୀବଗୋଷ୍ଠୀ ଯାହାଙ୍କ ତୁଳନାରେ ସାପ ବା ମାଛ ସହସ୍ର ଗୁଣରେ ପ୍ରାଚୀନ ଏବଂ ମୌଳିକ । ବିବର୍ତ୍ତନର ଅବାରିତ ଧାରା ଗୃଲିଛି ଏବଂ ଗୃଲିଥିବ । ବ୍ୟକ୍ତି-ମଣିଷ କେବଳ ଜୀବଧର୍ମରେ ଏ ଧାରାକୁ ପୁଷ୍ଟକରି ଗୃଲିଯିବା ହେଲି ତା'ର ଏକମାତ୍ର ଧର୍ମ ବା କର୍ତ୍ତବ୍ୟ । ମଣିଷ ପରେ ହୁଏତ' ଆଉ ଗୋଟାଏ ପ୍ରକାର ଜୀବ ଆସିବ—ସେ ହେବ ମଣିଷ ଅପେକ୍ଷା ଆହୁରି ସିଆଣିଆ; କିନ୍ତୁ ଆହୁରି ଦୁର୍ବଳ, ଆହୁରି କ୍ଷୁଦ୍ର । ଏଭଳି ଚିତ୍ରପଟ ବଦଳି ଗୃଲିଥିବ—ଗୋଟାଏ ଶୀତଳ, ନିର୍ବାପିତ, ବାତାବରଣ ଶୂନ୍ୟ, ଧୂଳିପିଣ୍ଡ ପର୍ଯ୍ୟନ୍ତ । ସେତେବେଳେ ପୃଥିବୀଟା ହାଣ୍ଡିପେଟରୁ ଗଳିପଡ଼ିଥିବା କେବଳ ନିଃଶେଷ କଇଁଠିଏ । ନିଷ୍ପ୍ରଦୀପ ଆକାଶ । ନିର୍ବାପିତ ସୂର୍ଯ୍ୟ-ଚନ୍ଦ୍ର ଶୀତଳ ଗ୍ରହ ବ୍ୟାପିଯିବ ଚତ୍ୱରେ । ଘୋର କାଳ-

Digitized by srujanika@gmail.com

ହବିରେ ସଂଖ୍ୟାହୀନ ଗ୍ରହ ନକ୍ଷତ୍ରର ପ୍ରେତାତ୍ମା ଲକ୍ଷ୍ୟହୀନ ଘୂରି ବୁଲୁଥିବେ । ସାରା ସୃଷ୍ଟି ହେବ ଏକ ନିସ୍ତବ୍ଧ ଶ୍ମଶାନ । ଆଉ ମଣିଷ ? —ଦେହ—ସେ କୋଉକାଳୁ ଜୀର୍ଣ୍ଣ ନିଶ୍ଚିହ୍ନ ହୋଇ ସାରିଥିବ ।

ଆଉଜଣେ ମନେ କରନ୍ତି ଯେ 'ମୁଁ' ପଦାର୍ଥଟି କୌଣସି ଏକକ ନୁହେଁ, ତାହା ଗୋଟିଏ ଦୁର୍ବୋଧ ସମାହାର । ଶରୀର, ମନ ନାମଧେୟ ଦୁଇଟି ସମାହାରର ସମଷ୍ଟି । ପ୍ରତିଟି ରକ୍ତକଣିକା, ପ୍ରତ୍ୟେକଟି ଶୁକ୍ରକୀଟ ସ୍ୱୟଂକ୍ରିୟ । ଇନ୍ଦ୍ରିୟଗୁଡ଼ିକ ସ୍ୱୟଂକ୍ରିୟ ଶକ୍ତିର ସ୍ରୋତ; ତା'ର ପ୍ରଖରତା ସବୁ ଆୟତ୍ତର ବାହାରେ, ଆବେଗ ପ୍ରବେଗ ମଧ୍ୟ ସେଇଭଳି । ହାବେଳରେ ନିଆଁ ଲଗେଇ ଦେଲେ ଯେମିତି ଅଗ୍ନି, ପବନ, ଶବ୍ଦ, ଆଲୁଅ ପରସ୍ପରକୁ ଠେଲି ପରସ୍ପର ସହିତ ଛନ୍ଦି ହୋଇ ଗୁଡ଼ିଏ ବସ୍ତୁକୁ କିଛିଦୂର ଶୂନ୍ୟକୁ ଟେକି ନେଇଯାଆନ୍ତି ଏବଂ ସେମାନେ ପରସ୍ପରକୁ ଖଣ୍ଡ କରିଦେଲାପରେ ଶୂନ୍ୟ ଘଟଟିଏ ଖସିପଡ଼େ; ସେଇ ପରି ମୁଁ । ମୁଁ ଏ ସମସ୍ତ ଅଣାୟତ୍ତ ଧାରାର ଗୋଟିଏ କଳ୍ପିତ ସମାହାର ।

ଏଇ ଯୁକ୍ତିରୁ ଆଉ ଗୋଟିଏ ଖିଅ ଫିଟିଯାଏ । ଏ ସମାହାରଟି କ'ଣ ସଚେତନ ? ନିଜେ ଗୋଟିଏ ସମାହାର ବୋଲି ଜାଣିବା ଗୋଟିଏ କ୍ରିୟା ମୁଁ କ'ଣ ସେଇ କ୍ରିୟାର କର୍ତ୍ତା ? ମନ ଇନ୍ଦ୍ରିୟ ଆବେଗ ସଂବେଗ ଇତ୍ୟାଦି ଇତ୍ୟାଦି କାଢ଼ି ନେଲେ ଆଉ କ'ଣ ଅବଶେଷ ରହୁଚି ନା ଏଇଟା ଗୋଟାଏ ନିରବଶେଷ ବସ୍ତୁସଂଘ ? ଏ ସମସ୍ତ ବସ୍ତୁ କ'ଣ ନିଜ ନିଜ ଇଚ୍ଛାରେ ଏକାଠି ହୋଇଛନ୍ତି ? ଇଚ୍ଛାକରିବା କିନ୍ତୁ ଜଡ଼ର ଧର୍ମ ନୁହେଁ, ତାହା ଚେତନର ଧର୍ମ । ଯଦି ସେମାନେ ସେଭଳି ସ୍ୱେଚ୍ଛାରେ ଏ ସମାହାର ସୃଷ୍ଟି କରି ନାହାନ୍ତି ତାଙ୍କୁ ଦେଶ କାଳ ମାଧ୍ୟମରେ କିଏ ବା କ'ଣ ଏକାଠି କରିଛି ? ଏଣୁ, ଆଜ୍ଞା ଏ ଗଳିରେ ବେଶିବାଟ ଯିବା ସମ୍ଭବ ନୁହେଁ । ପାତାଳ ମେଦ ଆଡ଼େଇ ଶୁଭ୍ର ଗିରିଚୂଡ଼ା ପରି ଦିଗ୍‌ବଳୟରେ ଦିଶିଲାଣି ପୁଣି ସେଇ ମୂଳ ପ୍ରଶ୍ନ "କସ୍ତ୍ୱଂ ?" ସଂସ୍କୃତ ଶୁଣିଲେ ସ୍ୱଦେଶପ୍ରେମୀ ପାଠକେ କାଳେ ମୂଳରୁ ହୁରୁଡ଼ି ଯିବେ ବୋଲି ତାକୁ ଲୁଚେଇ ରଖିଥିଲି; କିନ୍ତୁ ଏ ପ୍ରଶ୍ନଟି ମୂଳତଃ ଏଇ ଭୂମିର ପ୍ରଶ୍ନ ଏବଂ ଏଠି ଯାହା ଉତ୍ତର ମିଳେ ଆପଣ ବିଶ୍ୱାସ କଲେ କହିବ । ଆମ ପରଂପରାରେ ମୁଁ ମୋର ପରିଚୟର ସାମାନ୍ୟ ଆଭାସ ମାତ୍ର ଦେଉଛି, ଶୁଣିବାକୁ ଅବଧାନ ହେଉ ।

ମୁଁ ଚେତନ, ଜଡ଼ ନୁହେଁ, ବସ୍ତୁସଂଘ ନୁହେଁ । ସଂକଳ୍ପ ବିକଳ୍ପାତ୍ମକ ମନକୁ ମୁଁ ପ୍ରେରିତ କରେ ପରିଚାଳିତ କରେ । ଶରୀର ମୋର ପରିଧେୟ, ଜୀର୍ଣ୍ଣ ବସ୍ତ୍ର ପରି

Digitized by srujanika@gmail.com

ମୁଁ ତାକୁ ପରିହାର କରେ । ମୋର କ୍ଷୟ ନାହିଁ ଅଭିବୃଦ୍ଧି ମଧ୍ୟ ନାହିଁ, ମୋର ଜନ୍ମ ମୃତ୍ୟୁ ଜରା ବ୍ୟାଧି କିଛି ନାହିଁ । ବିବର୍ତ୍ତନର ଜଡ଼ଧର୍ମ ମୋ ପାଇଁ ନୁହେଁ । ମୁଁ ଏ ସୃଷ୍ଟିଠାରୁ ପୁରୁଣା । ଏ ବିପୁଳା ପୃଥିବୀ, ଏ ସୌରମଣ୍ଡଳ, ଏ ମନୋରମ ମୀହାରମାଳା କୋଟି କୋଟି ଆଲୋକ ବର୍ଷର ବ୍ୟବଧାନ ବିଚ୍ଛିନ୍ନ ଏ ଜ୍ୟୋତିଃପୁଞ୍ଜ ମୋ ତୁଳନାରେ ଅର୍ବାଚୀନ । ମୋ ପାଇଁ କାଳ ନିସ୍ତରଙ୍ଗ, ମୋର ଏକକ ସତ୍ତାରେ ବ୍ୟବଧାନ ବିଲୁପ୍ତ । ମୁଁ ସଂଖ୍ୟାରେ ଗଣନୀୟ ନୁହେଁ, ପରିମାଣରେ ପରିମେୟ ନୁହେଁ । ମୁଁ ବିକାର ଶୂନ୍ୟ, ଆକାର ଶୂନ୍ୟ ଓ ନିରବୟବ । ମୁଁ ନାସ୍ତିବାଚୀ ନୁହେଁ—ଅସ୍ତି ନାସ୍ତି ଉଭୟ ଅନୁଭୟ ଏ ଚତୁଷ୍କୋଟୀରେ ମୁଁ ବ୍ୟକ୍ତ ନୁହେଁ ।

ମୁଁ ଏକ ଚେତନାର ବିପୁଳ ସମୁଦ୍ର, ମୋର ଅସଂଖ୍ୟ ଶୀକର ବିନ୍ଦୁରେ ସମସ୍ତ ଜୀବ ଜଗତ ଭାସମାନ । ପଶୁ, ପକ୍ଷୀ, କୀଟ, ପତଙ୍ଗ, ମାନବ ଲକ୍ଷ କୋଟି ଜଡ଼ ଆୟତନର ବିମ୍ବରେଖା ଭିତରେ ଗୋଟିଏ ସମୁଦ୍ରର ଉପାଦାନରେ ପ୍ରାଣବନ୍ତ । ଏ ସମସ୍ତ ଜୀବଜଗତ୍ ଚୈତନ୍ୟମୟ ଏବଂ ଏ ଜୀବଜଗତର ପ୍ରତ୍ୟେକ କେନ୍ଦ୍ର ଓ ତା'ର ସମ୍ପୂର୍ଣ୍ଣ ବ୍ୟାପ୍ତି ମୁଁ । କେବଳ ଏ ପୃଥିବୀ ନୁହେଁ ଆଉ ଏକ ଦୁରନ୍ତ ବିଶ୍ୱର ପୃଥିବୀ ଯେଉଁଠି ହୁଏତ କେବଳ ବ୍ୟୋମ ହିଁ ଉପାଦାନ, ସେଇଠି କ୍ଷୁତ୍‌ପିପାସା ରହିତ ଅତି-ପ୍ରଜ୍ଞାବାନ୍ ମନୀଷିଗୁଡ଼ିକ ମଧ୍ୟ ଏ ଚେତନା ସମୁଦ୍ର ଶୀକର ବିନ୍ଦୁ ।

କେବଳ ଚେତନ ନୁହେଁ ଜଡ଼ ମଧ୍ୟ ଏ ପରିଧିର ଅନ୍ତର୍ଭୁକ୍ତ ! ପଞ୍ଚମହାଭୂତ ଚୈତନ୍ୟମୟ, ଏ ପାହାଡ଼, ଏ ମରୁପ୍ରାନ୍ତର, ଏ ଦିଗନ୍ତବ୍ୟାପୀ ସମୁଦ୍ର ରେଣୁ-ରେଣୁରେ ପ୍ରାଣବନ୍ତ । ମୁଁ ହିଁ ପ୍ରାଣ, ମୁଁ ପର୍ଜନ୍ୟ, ମୁଁ ସୋମ, ମୁଁ ସବିତା; ଅର୍ଥାତ୍ ଏ ସମସ୍ତଙ୍କୁ ଜାତକରି, ଧାରଣକରି ଏବଂ ଗ୍ରାସକରି ଯେଉଁ ପୁରୁଷ ଅଖଣ୍ଡୈକ ବିଦ୍ୟମାନ ସେହି ମୁଁ—ଅସାବସୌ ପୁରୁଷଃ ସୋହମସ୍ମି ।

ଏପରି ଜଗତ୍‌ବ୍ୟାପୀ ପରିଚୟ ଦେଇ ପରେ ଉଭୟପକ୍ଷ ଗମ୍ଭୀର ହୋଇଯିବାକୁ ବାଧ୍ୟ । ଏ ଉତ୍ତରେ ହୁଏତ' ମୂଳ ପ୍ରଶ୍ନର ଏପରି ସମାଧାନ ହୋଇଛି ଯେ, ତାହା ଆଉଥରେ ମୁଣ୍ଡଟେକି ରହିଁ ପାରିବ ନାହିଁ । ଏକକ ସତ୍ତାରେ ପ୍ରଶ୍ନ କାହିଁ କିଏ କାହାକୁ ପଚାରିବ ? କିନ୍ତୁ ସେ ପ୍ରଶ୍ନ ସିନା ନାହିଁ, ଏ ଲମ୍ବା ବକ୍ତୃତା ଭିତରେ ଏକ ଲକ୍ଷ ପ୍ରଶ୍ନ ଆସିଯାଉଛି । ସେସବୁ ପାଇଁ ଅଭ୍ୟାସଗତ ସୌଜନ୍ୟରେ ହସିଦେଇ ସକ୍ରେଟିସ୍ ହୁଏତ କହନ୍ତି "ହେଲ୍ ସେସବୁ ପରିହାସ ଛାଡ଼ନ୍ତୁ, କହନ୍ତୁ, ଆପଣ କିଏ ?" ଉତ୍ତର ଆସେ "ପରିହାସ କରିବାର୍ ଅବସର ଏ ଗମ୍ଭୀର ଭୂମିରେ

Digitized by srujanika@gmail.com

ନାହିଁ, ଧରଣୀପୃଷ୍ଠମାନେ ଦାର୍ଶନିକ କି ନା ଏଣୁ ସେମାନେ ଖୁବ୍ କମ୍ ହସନ୍ତି—ଯଦି ଏ ତତ୍ତ୍ୱସବୁ ଆପଣଙ୍କୁ ପରିହାସ ପରି ଶୁଭିଲା ତେବେ ଗୋଟିଏ କାମ କରନ୍ତୁ । ଏ ପ୍ରଶ୍ନଟି ଆପଣ ନିଜକୁ ପଚାରି ଯାଆନ୍ତୁ । ତା'ର ରୂପ ହେବ 'ମୁଁ କିଏ ?' ସାବଧାନ; କିନ୍ତୁ ଆମ ବସ୍ତୁର୍ ବ୍ୟବହାର କରିବେ ନାହିଁ, ସେ ପରିହାସ ହୋଇଯିବ···ଆପଣ ସେ ପ୍ରଶ୍ନ ଉପରେ ଧ୍ୟାନମଗ୍ନ ହୁଅନ୍ତୁ । ଆପଣଙ୍କ ଗୃହପଟେ ହୁଙ୍କା ଉଠିବା ପର୍ଯ୍ୟନ୍ତ ଆମେ ଅପେକ୍ଷା କଲୁ ।"

Digitized by srujanika@gmail.com

